ମୋତେ ତୁମର ଚରଣ ତଳେ ନତକର, ଲୁହରେ ମନକୁ ତରଳାଅ, ଜୀବନକୁ ଭସାଅ । ମୁଁ ଏକା ଅହଂକାରର ଉଚ୍ଚ ଅଚଳରେ—ସବଳେ ଭାଙ୍ଗି ପାଷାଣ—ଆସନକୁ ଧୂଳିରେ ଲୋଟାଅ, ମୋତେ ତୁମର ଚରଣତଳେ ରଖ ।

କଣ ନେଇ ଗର୍ବ କରିବ ବ୍ୟର୍ଥ ଜୀବନରେ ? ତୁମ ବିହୁନେ ଭରା ଗୃହରେ ମୁଁ ଶୂନ୍ୟ । ମୋ'ର ଦିନର କର୍ମ ମୋର ଅତଳରେ ଡୁବିଛି । ସଂଧ୍ୟାର ପୂଜା ଯେପରି ବିଫଳ ନହୁଏ, ମୋତେ ତୁମର ଚରଣ ତଳକୁ ଓହ୍ଲାଇ ଦିଅ ।



ଆଜି ଗନ୍ଧବିଧୁର ସମୀରଣେ
କାର ସନ୍ଧାନେ ଫିରି ବନେ ବନେ ।
ଆଜି କ୍ଷୁବ୍‌ଧ ନୀଲାମ୍ବର ମାଝେ
ଏକି ଚଞ୍ଚଲ କ୍ରନ୍ଦନ ବାଜେ ।
ସୁଦୂର ଦିଗନ୍ତେର ସକରୁଣ ସଂଗୀତ
ଲାଗେ ମୋର ଚିନ୍ତାୟ କାଜେ—
ଆମି ଖୁଁଜି କାରେ ଅନ୍ତରେ ମନେ
ଗନ୍ଧବିଧୁର ସମୀରଣେ ।
ଓଗୋ ଜାନି ନା କୀ ନନ୍ଦନରାଗେ
ସୁଖେ ଉତ୍ସୁକ ଯୌବନ ଜାଗେ ।
ଆଜି ଆମ୍ରମୁକୁଲ ସୌଗନ୍ଧେ
ନବ—ପଲ୍ଲବ ମର୍ମର ଛନ୍ଦେ
ଚନ୍ଦ୍ର କିରଣ ସୁଧା ସିଞ୍ଚିତ ଅମ୍ବରେ
ଅଶ୍ରୁ ସରସ ମହାନନ୍ଦେ
ଆମି ପୁଲକିତ କାର ପରଶନେ
ଗନ୍ଧବିଧୁର ସମୀରଣେ ।

ବୋଲପୁର
ଫାଲ୍‌ଗୁନ ୧୩୧୬

ଆଜି ଗନ୍ଧ ବିଧୁର ସମୀରଣରେ କାହାର ସନ୍ଧାନରେ ମୁଁ ବନେ ବନେ ଘୁରି ବୁଲେ । କ୍ଷୁବ୍‌ଧ ନୀଳାମ୍ବର ମଝିରେ ଆଜି ଏଇ କି ଚଞ୍ଚଳ କ୍ରନ୍ଦନ ବାଜୁଛି । ସୁଦୂର ଦିଗନ୍ତର ସକରୁଣ ସଂଗୀତ ମୋର ଚିନ୍ତା ଓ କର୍ମରେ ଲାଗୁଛି— ଗନ୍ଧବିଧୁର ସମୀରଣରେ କାହାକୁ ଆନ୍ତରିକ ମନରେ ଖୋଜୁଛି ?

ଆଗୋ, ମୁଁ ଜାଣେନା କେଉଁ ନନ୍ଦନ ରାଗର ସୁଖରେ ଉତ୍ସୁକ ଯୌବନ ଜାଗି ଉଠିଛି । ଅମ୍ର ମୁକୁଳ ସୁଗନ୍ଧରେ ନବ ପଲ୍ଲବର ମର୍ମର ଛନ୍ଦରେ ଚନ୍ଦ୍ର କିରଣ-ସୁଧା ସିଞ୍ଚିତ ଅମ୍ବରରେ ଅଶ୍ରୁ ସରସ ମହାନନ୍ଦରେ ଗନ୍ଧବିଧୁର ସମୀରଣରେ ଆଜି ମୁଁ କାର ପରଶରେ ପୁଲକିତ ।



আজি বসন্ত জাগ্রত দ্বারে ।
তব অবগুণ্ঠিত কুণ্ঠিত জীবনে
কোরো না বিড়ম্বিত তারে ।

আজি খুলিয়ো হৃদয়দল খুলিয়ো
আজি ভুলিয়ো আপনপর ভুলিয়ো,
এই সংগীত মুখরিত গগনে
তব গন্ধ তরঙ্গিয়া তুলিয়ো ।
এই বাহির ভুবনে দিশা হারায়ে
দিয়ো ছড়ায়ে মাধুরী ভরে ভরে ।

অতি নিবিড় বেদনা বনমাঝে রে
আজি পল্লবে পল্লবে বাজে রে—
দূরে গগনে কাহার পথ চাহিয়া
আজি ব্যাকুল বসুন্ধরা সাজে রে ।

মোর পরানে দখিন বায়ু লাগিছে,
কারে দ্বারে দ্বারে কর হানি মাগিছে,
এই সৌরভ বিহ্বল রজনী
কার চরণে ধরণীতলে জাগিছে ।
ওগো সুন্দর, বল্লভ, কান্ত,
তব গম্ভীর আহ্বান কারে ।

বোলপুর
২৬ চৈত্র ১৩১৬

ଆଜି ବସନ୍ତ ଦ୍ୱାରରେ ଜାଗ୍ରତ । ତବ ଅବଗୁଣ୍ଠିତ କୁଣ୍ଠିତ ଜୀବନରେ ତାହାଙ୍କୁ ବିଡ଼ମ୍ବିତ କରନା ।

ପର ଆପଣା ଭୁଲି ଆଜି ହୃଦୟର ପାଖୁଡ଼ା ଖୋଲିଦିଅ । ଏଇ ସଙ୍ଗୀତ ମୁଖରିତ ଗଗନକୁ ତୁମର ଗନ୍ଧରେ ତରଙ୍ଗାୟିତ କରି ତୋଳ । ଏଇ ବାହାର ଭୁବନରେ ଦିଗହରା ହୋଇ ସ୍ତରେ ସ୍ତରେ ତୁମର ମାଧୁରୀ ବାଣ୍ଟିଦିଅ ।

ବନ ମଧ୍ୟରେ ପଲ୍ଲବ ପଲ୍ଲବ ଦେହରେ ଆଜି ଅତି ନିବିଡ ବେଦନା ବାଜୁଛି । ଦୂର ଗଗନରେ କାହାର ପଥଚାହିଁ ବ୍ୟାକୁଳ ବସୁନ୍ଧରା ସଜ ହେଉଛି ।

ମୋର ପ୍ରାଣରେ ଦକ୍ଷିଣା ପବନ ଲାଗିଛି । ଦ୍ୱାରେ ଦ୍ୱାରେ କରସ୍ପର୍ଶ କରି କାହାକୁ ମାଗୁଛି । ଏଇ ସୌରଭ ବିହ୍ୱଳ ରଜନୀ କାହାର ଚରଣରେ ଧରଣୀ ତଳେ ଜାଗି ଉଠିଛି । ଆଗୋ ସୁନ୍ଦର, ବଲ୍ଲଭ, କାନ୍ତ, ତୁମର ଗମ୍ଭୀର ଆହ୍ୱାନ କାହା ଉଦ୍ଦେଶ୍ୟରେ ।



## ୫୭

ତବ  ସିଂହାସନେର ଆସନ ହତେ
ଏଲେ ତୁମି ନେମେ–
ମୋର ବିଜନ ଘରେର ଦ୍ୱାରେର କାଛେ
ଦାଁଡାଲେ, ନାଥ, ଥେମେ ।

ଏକଲା ବସେ ଆପନ-ମନେ
ଗାଇତେଛିଲେମ ଗାନ,
ତୋମାର କାନେ ଗେଲ ସେ ସୁର,
ଏଲେ ତୁମି ନେମେ–
ମୋର  ବିଜନ ଘରେର ଦ୍ୱାରେର କାଛେ
ଦାଁଡାଲେ, ନାଥ, ଥେମେ ।

ତୋମାର  ସଭାୟ କତନା ଗାନ
କତଇ ଆଛେନ ଗୁଣୀ–
ଗୁଣହୀନେର ଗାନଖାନି ଆଜ
ବାଜଲ ତୋମାର ପ୍ରେମେ ।

ଲାଗଲ ବିଶ୍ୱତାନେର ମାଝେ
ଏକଟି କରୁଣ ସୁର,
ହାତେ ଲୟେ ବରଣମାଲା
ଏଲେ ତୁମି ନେମେ–
ମୋର  ବିଜନ ଘରେର ଦ୍ୱାରେର କାଛେ
ଦାଁଡ଼ାଲେ, ନାଥ, ଥେମେ ।

୨୭ ଚୈତ୍ର ୧୩୧୬

ନାଥ, ତୁମ ସିଂହାସନରୁ ଓହ୍ଲାଇ ଆସି ତୁମେ ମୋର ବିଜନ ଘରର ଦୁଆରରେ ଅଟକି ଠିଆହେଲ । ଏକାବସି ମନକୁ ମନଗୀତ ଗାଉଥିଲି, ତୁମ କାନରେ ସେ ସ୍ୱର ବାଜିବା ମାତ୍ରେ ତୁମେ ଓହ୍ଲାଇ ଆସି ମୋର ନିର୍ଜନ ଘରର ଦୁଆରରେ ଅଟକି ଠିଆ ହେଲ ।

ତୁମ ସଭାରେ କେତେ ଗୀତ, କେତେ ଗୁଣୀ ନ ଅଛନ୍ତି ? ଗୁଣ ହୀନର ଗୀତଟି ଆଜି ତୁମ ପ୍ରେମରେ ବାଜିଲା ।

ବିଶ୍ୱତାନର ମଝିରେ ଗୋଟିଏ କରୁଣ ସ୍ୱର ମିଶିଲା । ତୁମେ ହାତରେ ବରଣମାଳା ନେଇ ମୋର ବିଜନ ଘରର ଦ୍ୱାରରେ ଅଟକିଲ ।



৮৩

তুমি এবার আমায় লহো হে নাথ, লহো ।
এবার তুমি ফিরো না হে—
হৃদয় কেড়ে নিয়ে রহো ।
যেদিন গেছে তোমা বিনা
তারে আর ফিরে চাহি না,
যাক সে ধুলাতে ।
এখন তোমার আলোয় জীবন মেলে
যেন জাগি অহরহ ।

কী আবেশে কিসের কথায়
ফিরেছি হে যথায় তথায়
পথে প্রান্তরে,
এবার বুকের কাছে ও মুখ রেখে
তোমার আপন বাণী কহো ।

কত কলুষ কত ফাঁকি
এখনো যে আছে বাকি
মনের গোপনে—
আমায় তার লাগি আর ফিরায়ো না,
তারে আগুন দিয়ে দহো ।

২৮ চৈত্র ১৩১৬

ହେ ନାଥ, ଏଥର ତୁମେ ଫେରନାହିଁ, ହୃଦୟ କାଢ଼ି ନିଅ, ଏଥର ତୁମେ ମୋତେ ନିଅ ।

ଯେଉଁ ଦିନଗୁଡ଼ିକ ତୁମ ବିନା ଚାଲି ଯାଇଛି, ସେ ଧୂଳିରେ ମିଶୁ । ତାକୁ ଫେରି ଚାହିଁବିନି । ଏବେ ଯେପରି ତୁମର ଆଲୋକରେ ଜୀବନ ମେଲି ଅହରହ ଜାଗି ରହେଁ ।

କେଉଁ ଆବେଶରେ କେଉଁ କଥାରେ ପଥ ପ୍ରାନ୍ତରେ ଯହଁତହଁ ଘୁରିଛି, ଏଥର ହୃଦରେ ସେ ମୁହଁ ରଖି ତୁମ ନିଜର ବାଣୀ କୁହ ।

କେତେ କଳୁଷ କେତେ ଫାଙ୍କି ଏବେ ବି ମନର ଗୋପନରେ ବାକି ଅଛି ଯେ ନିମନ୍ତେ ମୋତେ ଆଉ ଫେରାଇ ଦିଅନା, ସେ ସବୁକୁ ଅଗ୍ନିରେ ଦହନ କର ।



ଜୀବନ ଯଖନ ଶୁକାୟେ ଯାୟ
କରୁଣାଧାରାୟ ଏସୋ ।
ସକଲ ମାଧୁରୀ ଲୁକାୟେ ଯାୟ,
ଗୀତ ସୁଧା ରସେ ଏସୋ ।
କର୍ମ ଯଖନ ପ୍ରବଲ–ଆକାର
ଗରଜି ଉଠିୟା ଢାକେ ଚାରିଧାର
ହୃଦୟ ପ୍ରାନ୍ତେ, ହେ ନୀରବ ନାଥ,
ଶାନ୍ତ ଚରଣେ ଏସୋ ।
ଆପନାରେ ଯବେ କରିୟା କୃପଣ
କୋଣେ ପଡେ ଥାକେ ଦୀନହୀନ ମନ
ଦୁୟାର ଖୁଲିୟା, ହେ ଉଦାର ନାଥ,
ରାଜ ସମାରୋହେ ଏସୋ ।
ବାସନା ଯଖନ ବିପୁଲ ଧୁଲାୟ
ଅନ୍ଧ କରିୟା ଅବୋଧେ ଭୁଲାୟ
ଓହେ ପବିତ୍ର, ଓହେ ଅନିଦ୍ର,
ରୁଦ୍ର ଆଲୋକେ ଏସୋ ।

୨୮ ଚୈତ୍ର ୧୩୧୬

ଜୀବନ ଯେତେବେଳେ ଶୁଖିଯାଏ, କରୁଣା ଧାରାରେ ସେତେବେଳେ ଆସ । ସକଳ ମାଧୁରୀ ଲୁଚିଗଲାବେଳେ ଗୀତ ସୁଧାରସରେ ଆସ ।

କର୍ମ ଯେତେବେଳେ ପ୍ରବଳାକାର ଗର୍ଜିଉଠି ଚାରିଦିଗକୁ ଢାଙ୍କେ, ହେ ନୀରବନାଥ, ସେତେବେଳେ ଶାନ୍ତଚରଣରେ ହୃଦୟ ପ୍ରାନ୍ତକୁ ଆସ ।

ଯେତେବେଳେ ନିଜକୁ କୃପଣ କରି ଦୀନହୀନ ମନ କୋଣରେ ପଡ଼ିଥାଏ, ହେ ଉଦାର ନାଥ, ସେତେବେଳେ ଦୁଆରଖୋଲି ରାଜ ସମାରୋହରେ ଆସ ।

ବାସନା ଯେତେବେଳେ ବିପୁଳ ଧୂଳିରେ ଅନ୍ଧକରି ଏ ଅବୋଧକୁ ଭୁଲାଏ, ହେ ପବିତ୍ର, ହେ ଅନିଦ୍ର, ସେତେବେଳେ ତୁମେ ରୁଦ୍ର ଆଲୋକରେ ଆସ ।

## ୫୯

ଏବାର ନୀରବ କରେ ଦାଓ ହେ ତୋମାର
ମୁଖର କବିରେ,
ତାର ହୃଦୟ-ବାଁଶି ଆପନି କେଡ଼େ
ବାଜାଓ ଗଭୀରେ ।
ନିଶୀଥରାତେର ନିବିଡ଼ ସୁରେ
ବାଁଶିତେ ତାନ ଦାଓ ହେ ପୁରେ,
ଯେ ତାନ ଦିୟେ ଅବାକ କର
ଗ୍ରହଶଶୀରେ ।
ଯା– କିଛୁ ମୋର ଛଡ଼ିୟେ ଆଛେ
ଜୀବନ–ମରଣେ,
ଗାନେର ଟାନେ ମିଲୁକ ଏସେ
ତୋମାର ଚରଣେ ।
ବହୁଦିନେର ବାକ୍ୟରାଶି
ଏକ ନିମେଷେ ଯାବେ ଭାସି,
ଏକଲା ବସେ ଶୁନବ ବାଁଶି
ଅକୂଲ ତିମିରେ ।

୩୦ ଚୈତ୍ର ୧୩୧୬

ମୁଖର କବିକୁ ଏଥର ନୀରବ କରିଦେଇ ତାର ହୃଦୟ-ବଂଶୀଟିକୁ କାଢ଼ି ନେଇ ତୁମେ ନିଜେ ବଜାଅ ।

ନିଶୀଥ ରାତିର ସେହି ନିବିଡ଼ ସୁରରେ ବଂଶୀରେ ତାନ ଭରି ଦିଅ, ଯେଉଁ ତାନ ଦେଇ ଗ୍ରହଶଶୀଙ୍କୁ ଅବାକ୍ କର ।

ମୋର ଜୀବନ-ମରଣରେ ଯାହା କିଛି ବିଚ୍ଛୁରିତ ହୋଇ ପଡ଼ିଛି, ତୁମର ଗାନର ଆକର୍ଷଣରେ ତୁମ ଚରଣରେ ଆସି ମିଶୁ ।

ଏକା ବସି ଅକୂଳ ତିମିରରେ ତୁମର ବଂଶୀ ଶୁଣିବି, ନିମିଷକରେ ବହୁ ଦିନର ବାକ୍ୟରାଶି ଭାସିଯିବ ।

## ୭୦

ବିଶ୍ୱ ଯଖନ ନିଦ୍ରା ମଗନ,
ଗଗନ ଅନ୍ଧକାର,
କେ ଦେୟ ଆମାର ବୀଣାର ତାରେ
ଏମନ ଝଂକାର ।
ନୟନେ ଘୁମ ନିଲ କେଡ଼େ
ଉଠେ ବସି ଶୟନ ଛେଡ଼େ,
ମେଲେ ଆଁଖି ଚେୟେ ଥାକି—
ପାଇ ନେ ଦେଖା ତାର
ଗୁଞ୍ଜରିୟା ଗୁଞ୍ଜରିୟା
ପ୍ରାଣ ଉଠିଲ ପୁରେ,
ଜାନି ନେ କୋନ୍ ବିପୁଲ ବାଣୀ
ବାଜେ ବ୍ୟାକୁଲ ସୁରେ ।
କୋନ୍ ବେଦନାୟ ବୁଝିଁ ନା ରେ
ହୃଦୟ ଭରା ଅଶ୍ରୁଭରେ,
ପାରିୟେ ଦିତେ ଚାଇ କାହାରେ
ଆପନ କଣ୍ଠହାର ।

୪ ବୈଶାଖ ୧୩୧୬

ଯେତେବେଳେ ବିଶ୍ୱ ନିଦ୍ରାରେ, ଗଗନ ଅନ୍ଧକାରରେ ମଗ୍ନ, କିଏ ମୋର ବୀଣାର ତାରରେ ଏପରି ଝଂକାର ଦିଏ । କିଏ ଆଖିର ନିଦ କାଢ଼ି ନେଲା ? ଉଠି ବସିଲି, ଆଖିମେଲି ଚାହିଁ ରହିଲି, ମାତ୍ର ତାର ଦେଖା ମିଳିଲା ନାହିଁ ।

କେଉଁ ବିପୁଳ ବାଣୀ ବ୍ୟାକୁଳ ସ୍ୱରରେ ବାଜୁଛି ଜାଣେନା, ମାତ୍ର ଗୁଞ୍ଜରଣରେ ପ୍ରାଣ ପୂରି ଉଠୁଛି । ଜାଣେ ନାଁ—କେଉଁ ବେଦନାରେ ହୃଦୟ ଅଶ୍ରୁ-ଭରରେ ଭରି, କାହାକୁ ନିଜର କଣ୍ଠହାର ପିନ୍ଧାଇ ଦେବାକୁ ଚାହେଁ ବୁଝିପାରୁ ନାହିଁ ।

## ୭୧

ସେ ଯେ ପାଶେ ଏସେ ବସେଛିଲ,
ତବୁ ଜାଗି ନି ।
କୀ ଘୁମ ତୋରେ ପେୟେଛିଲ
ହତଭାଗିନୀ ।
ଏସେ ଛିଲ ନୀରବ ରାତେ,
ବୀଣାଖାନି ଛିଲ ହାତେ,
ସ୍ୱପନ-ମାଝେ ବାଜିୟେ ଗେଲ
ଗଭୀର ରାଗିଣୀ ।
ଜେଗେ ଦେଖି ଦଖିନ ହାଓୟା
ପାଗଲ କରିୟା
ଗନ୍ଧ ତାହାର ଭେସେ ବେଡ଼ାୟ
ଆଁଧାର ଭରିୟା ।
କେନ ଆମାର ରଜନୀ ଯାୟ,
କାଛେ ପେୟେ କାଛେ ନା ପାୟ,
କେନ ଗୋ ତାର ମାଲାର ପରଶ
ବୁକେ ଲାଗେ ନି ।

ବୋଲପୁର
୧୨ ବୈଶାଖ ୧୩୧୭

ହତଭାଗିନୀ, ତୋତେ କି ନିଦ ଘାରିଥିଲା, ସେ ପାଖରେ ଆସି ବସିଥିଲେ ସୁଦ୍ଧା ତୁ ଉଠିଲୁ ନାହିଁ । ତାର ହାତରେ ବୀଣା ଥିଲା, ନୀରବ ରାତରେ ଆସି ସ୍ୱପ୍ନ ମଝିରେ ଗଭୀର ରାଗିଣୀ ବଜାଇ ଗଲା ।

ଜାଗି ଉଠି ଦେଖିଲି ଅନ୍ଧାରକୁ ପୂର୍ଣ୍ଣକରି ଦକ୍ଷିଣ ପବନକୁ ପାଗଳ କରି ତାର ଗନ୍ଧ ଭାସି ବୁଲୁଛି । କାହିଁକି ମୋର ରାତି ବିତେ, ପାଖରେ ପାଇ ପାଇ ପାରେନା, କାହିଁକି ତାର ମାଳାର ସ୍ପର୍ଶ ହୃଦୟରେ ଲାଗେନା ।

# ୭୨

ତୋରା ଶୁନିସ ନି କି ଶୁନିସ ନି କି ତାର ପାୟେର ଧ୍ୱନି,
ଓଇ ଯେ ଆସେ, ଆସେ, ଆସେ ।
ଯୁଗେ ଯୁଗେ ପଲେ ପଲେ ଦିନ-ରଜନୀ
ସେ ଯେ ଆସେ, ଆସେ, ଆସେ ।

ଗେୟେଛି ଗାନ ଯଖନ ଯତ
ଆପନ-ମନେ ଖ୍ୟାପାର ମତୋ ।
ସକଲ ସୁରେ ବେଜେଛେ ତାର
ଆଗମନୀ
ସେ ଯେ ଆସେ, ଆସେ, ଆସେ ।

କତ କାଲେର ଫାଗୁନ-ଦିନେ ବନେର ପଥେ
ସେ ଯେ ଆସେ, ଆସେ, ଆସେ ।
କତ ଶ୍ରାବଣ-ଅନ୍ଧକାରେ ମେଘେର ରଥେ
ସେ ଯେ ଆସେ, ଆସେ, ଆସେ ।

ଦୁଖେର ପରେ ପରମ ଦୁଖେ
ତାରଇ ଚରଣ ବାଜେ ବୁକେ,
ସୁଖେ କଖନ ବୁଲିୟେ ସେ ଦେୟ
ପରଶମଣି ।
ସେ ଯେ ଆସେ, ଆସେ, ଆସେ ।

କଲିକତା
୩ ଜ୍ୟେଷ୍ଠ ୧୩୧୭

ତୁମେମାନେ ଶୁଣିନକି, ଶୁଣିନକି ତାର ପଦଧ୍ୱନି-ହେଇ ଯେ ସେ ଆସେ···। ଯୁଗ ଯୁଗ, ପଳପଳ, ଦିବସ ରଜନୀ ସେ ଆସେ । ଯେତେବେଳ ଯେମିତି ମନକୁ ମନ ପାଗଳ ପରି ଗୀତ ବୋଲିଛୁ, ସକଳ ସୁରରେ ତାର ଆଗମନୀ ବାଜି ଉଠିଛି । ସେ ଯେ ଆସେ··· ।

କେତେ କାଳର ଫଗୁଣ ମାସରେ ବଣ ପଥରେ ସେ ଯେ ଆସେ··· । କେତେ ଶ୍ରାବଣ ଅନ୍ଧକାରରେ ମେଘ ରଥରେ ସେ ଯେ ଆସେ···। ଦୁଃଖ ପରେ ପରମ ଦୁଃଖରେ ତାହାର ଚରଣ ହୃଦୟରେ ବାଜେ । ସୁଖରେ କେବେ ହେ ପରଶମଣି ବୁଲାଇ ଦିଏ । ସେ ଯେ ଆସେ··· ।



## ୭୩

ମେନେଛି ହାର ମେନେଛି ।

ଠେଲତେ ଗେଛି ତୋମାୟ ଯତ

ଆମାୟ ତତ ହେନେଛି ।

ଆମାର ଚିତ୍ତଗଗନ ଥେକେ

ତୋମାୟ କେଉ ଯେ ରାଖବେ ଢେକେ

କୋନୋମତେଇ ସଇବେ ନା ସେ

ବାରେବାରେଇ ଜେନେଛି ।

ଅତୀତ ଜୀବନ ଛାୟାର ମତୋ

ଚଲଛେ ପିଛେ ପିଛେ,

କତ ମାୟାର ବାଁଶିର ସୁରେ

ଡାକଛେ ଆମାୟ ମିଛେ ।

ମିଲ ଛୁଟେଛେ ତାହାର ସାଥେ,

ଧରା ଦିଲେମ ତୋମାର ହାତେ,

ଯା ଆଛେ ମୋର ଏଇ ଜୀବନେ

ତୋମାର ଦ୍ୱାରେ ଏନେଛି ।

ତିନଧରିୟା

୭ ଜ୍ୟୈଷ୍ଠ ୧୩୧୭

ମାନିଛୁ, ହାର ମାନିଛୁ । ତମକୁ ଯେତେ ଠେଲିବାକୁ ଯାଇଛୁ, ନିଜକୁ ସେତେ ହାରିଛୁ । ମୋ ଚିତ୍ତାକାଶରୁ ତୁମକୁ କେହି ଯେ ଢାଙ୍କି ରଖିବ ଏକଥା କୌଣସିମତେ ସେ ସହିବ ନାହିଁ । ବାରମ୍ବାର ମୁଁ ଜାଣିଛୁ ।

ଅତୀତ ଜୀବନ ଛାୟା ସଦୃଶ; ପଛରେ ଚାଲିଛୁ । କେତେ ମାୟାର ବଂଶୀ ସ୍ୱର ମୋତେ ମିଛରେ ଡାକୁଛୁ । ତାହା ସାଥିରେ ମେଳ କଟିଛୁ । ମୋର ଜୀବନରେ ଯାହା ଅଛୁ ତୁମ ଦ୍ୱାରକୁ ଆଣିଛୁ । ତମର ହାତରେ ଧରା ଦେଇଛୁ।

ଏକଟି ଏକଟି କରେ ତୋମାର
ପୁରନୋ ତାର ଖୋଲେ,
ସେତାର ଖାନି ନୂତନ ବେଁଧେ ତୋଲେ ।
ଭେଙେ ଗେଛେ ଦିନେର ମେଲା,
ବସବେ ସଭା ସନ୍ଧ୍ୟାବେଲା,
ଶେଷେର ସୁର ଯେ ବାଜାବେ ତାର
ଆସାର ସମୟ ହଲ—
ସେତାର ଖାନି ନୂତନ ବେଁଧେ ତୋଲୋ ।

ଦୁୟାର ତୋମାର ଖୁଲେ ଦାଓ ଗୋ
ଆଁଧାର ଆକାଶ-'ପରେ
ସପ୍ତ ଲୋକେର ନୀରବତା
ଆସୁକ ତୋମାର ଘରେ ।
ଏତଦିନ ଯେ ଗେୟେଛେ ଗାନ
ଆଜକେ ତାରଇ ହୋକ ଅବସାନ,
ଏ ଯନ୍ତ୍ର ଯେ ତୋମାର ଯନ୍ତ୍ର
ସେଇ କଥାଟାଇ ଭୋଲୋ ।
ସେ ତାର ଖାନି ନୂତନ ବେଁଧେ ତୋଲୋ ।

ତିନଧରିୟା
୮ ଜ୍ୟେଷ୍ଠ ୧୩୧୭

ଗୋଟିଏ ଗୋଟିଏ କରି ତୁମର ସୀତାରରେ ପୁରୁଣା ତାର ଖୋଲି ନୂତନ କରି ବାନ୍ଧ । ଦିନର ମେଳା ଭାଙ୍ଗି ଯାଇଛି, ସନ୍ଧ୍ୟାବେଳା ସଭା ବସିବ । ଶେଷ-ସ୍ୱର ଯିଏ ବଜାଇବ ତାର ଆସିବା ସମୟ ହେଲା । ସୀତାରକୁ ନୂତନ କର...।

ଅନ୍ଧାର ଆକାଶ ଆଡ଼େ ଦୁଆର ତୁମର ଖୋଲିଦିଅ । ତମ ଘରକୁ ସପ୍ତ ଲୋକର ନୀରବତା ଆସୁ । ଏତେ ଦିନ ଯିଏ ଗୀତ ଗାଇଛି ଆଜି ତାର ଅବସାନ ହେଉ । ଏ ଯେ ତୁମର ଯନ୍ତ୍ର ସେଇ କଥାଟା ଭୁଲିଯାଅ । ସୀତାରକୁ ନୂତନ କରି ବାନ୍ଧ ।

## ୭୫

କବେ ଆମି ବାହିର ହଲେମ ତୋମାରଇ ଗାନ ଗେୟେ—
ସେ ତୋ ଆଜକେ ନୟ ସେ ଆଜକେ ନୟ ।
ଭୁଲେ ଗେଛି କବେ ଥେକେ ଆସିଛି ତୋମାୟ ଚେୟେ—
ସେ ତୋ ଆଜକେ ନୟ ସେ ଆଜକେ ନୟ ।
ଝର୍ଣା ଯେମନ ବାହିରେ ଯାୟ,
ଜାନେ ନା ସେ କାହାରେ ଚାୟ,
ତେମନି କରେ ଧେୟେ ଏଲେମ
ଜୀବନଧାରା ବେୟେ—
ସେ ତୋ ଆଜକେ ନୟ ସେ ଆଜକେ ନୟ ।

କତଇ ନାମେ ଡେକେଛି ଯେ,
କତଇ ଛବି ଏଁକେଛି ଯେ,
କୋନ୍ ଆନନ୍ଦେ ଚଲେଛି ତାର
ଠିକାନା ନା ପେୟେ—
ସେ ତୋ ଆଜକେ ନୟ ସେ ଆଜକେ ନୟ ।

ପୁଷ୍ପ ଯେମନ ଆଲୋର ଲାଗି
ନା ଜେନେ ରାତ କାଟାୟ ଜାଗି
ତେମନି ତୋମାର ଆଶାୟ ଆମାର
ହୃଦୟ ଆଛେ ଛେୟେ—
ସେ ତୋ ଆଜକେ ନୟ ସେ ଆଜକେ ନୟ ।

ତିନଧରିୟା
୯ ଜ୍ୟେଷ୍ଠ ୧୩୧୭

ତୁମ ଗୀତ ଗାଇ କେବେ ମୁଁ ବାହାରି ଆସିଲି, ତମକୁ ପାଇବା ପାଇଁ କେବେଠୁ ଆସିଛି ଭୁଲିଯାଇଛି । ସେ ତ ଆଜି ନୁହେଁ··· । ଝରଣା ଯେମିତି କାହାକୁ ଚାହେଁ ନ ଜାଣି ବାହାରି ଆସେ, ମୁଁ ସେପରି ଜୀବନଧାରା ବାହି ଚାଲି ଆସିଲି । ସେ ତ ଆଜି ନୁହେଁ···। କେତେ ନାମରେ ଡାକିଛି, କେତେ ଛବି ଆଙ୍କିଛି, କେଉଁ ଆନନ୍ଦରେ ଚାଲିଛି ତାର ଠିକଣା ପାଏ ନାହିଁ । ସେ ତ ଆଜି ନୁହେଁ···। ପୁଷ୍ପ ଯେପରି ଆଲୋକ ପାଇଁ ଅଜାଣତରେ ଅନିଦ୍ରା ହୋଇ ରାତି କଟାଏ ସେମିତି ତୁମର ଆଶା ମୋ ହୃଦୟକୁ ଛୁଇଁ ରହିଛି । ସେ ତ ଆଜି ନୁହେଁ···।



## ୭୭

ତୋମାର ପ୍ରେମ ଯେ ବଇତେ ପାରି
ଏମନ ସାଧ୍ୟ ନାଇ ।
ଏ ସଂସାରେ ତୋମାର ଆମାର
ମାଝ ଖାନେତେ ତାଇ
କୃପା କରେ ରେଖେଛ ନାଥ,
ଅନେକ ବ୍ୟବଧାନ—
ଦୁଃଖ ସୁଖେର ଅନେକ ବେଡ଼ା
ଧନଜନମାନ ।

ଆଡ଼ାଲ ଥେକେ କ୍ଷଣେ କ୍ଷଣେ
ଆଭସେ ଦାଓ ଦେଖା—
କାଲୋ ମେଘେର ଫାଙ୍କେ ଫାଙ୍କେ
ରବିର ମୃଦୁ ରେଖା ।

ଶକ୍ତି ଯାରେ ଦାଓ ବହିତେ
ଅସୀମ ପ୍ରେମେର ଭର
ଏକେବାରେ ସକଲ ପର୍ଦା
ଘୁଚୟେ ଦାଓ ତାର ।

ନା ରଖ ତାର ଘରେର ଆଡ଼ାଲ,
ନା ରଖ ତାର ଧନ,
ପଥେ ଏନେ ନିଃଶେଷେ ତାୟ
କର ଅକିଞ୍ଚନ ।

ନା ଥାକେ ତାର ମାନ ଅପମାନ,
ଲଜ୍ଜାଶରମ ଭୟ—
ଏକଲା ତୁମି ସମସ୍ତ ତାର
ବିଶ୍ୱଭୁବନ ମୟ ।
ଏମନ କରେ ମୁଖୋମୁଖି
ସାମନେ ତୋମାର ଥାକା,
କେବଲ ମାତ୍ର ତୋମାତେ ପ୍ରାଣ
ପୂର୍ଣ୍ଣ କରେ ରଖା,
ଏ ଦୟା ଯେ ପେୟେଛେ ତାର
ଲୋଭେର ସୀମା ନାଇ—
ସକଲ ଲୋଭ ସେ ସରିୟେ ଫେଲେ
ତୋମାୟ ଦିତେ ଠାଁଇ ।

ତିନଧରିୟା
୧୦ ଜ୍ୟୈଷ୍ଠ ୧୩୧୭

ତୁମ ପ୍ରେମ ଯେ ବୋହି ନେଇ ପାରିବ ଏ ସାଧ୍ୟ ମୋର ନାହିଁ । ହେ ନାଥ, ସେଇଥିପାଇଁ ଦୟାକରି ଆମ ଦୁହିଁଙ୍କ ମଝିରେ ସୁଖଦୁଃଖର ବାଡ, ଧନଜନମାନ ଆଦି ଅନେକ ବ୍ୟବଧାନ ରଖିଛ । ଅଢୁଆଳରୁ କ୍ଷଣେ କ୍ଷଣେ ଆଭାସରେ ଦେଖାଦିଅ, ଯେମିତି କଳା ମେଘର ଫାଙ୍କେ ଫାଙ୍କେ ସୂର୍ଯ୍ୟର ମୃଦୁରେଖା ।

ଅସୀମ ପ୍ରେମର ଭାର ବୋହିବାକୁ ଯାହାଙ୍କୁ ଶକ୍ତି ଦିଅ, ତାର ମଝିରୁ ସକଳ ପର୍ଦ୍ଦା ଘୁଞ୍ଚାଇ ଦିଅ । ତାର ଘରର ବନ୍ଧନ ରଖନା, ଧନ ରଖନା, ପଥକୁ ଆଣି ତାକୁ ନିଃଶେଷ ଓ ଅକିଞ୍ଚନ କରିଦିଅ ।

ତାର ମାନ ଅପମାନ ରହେନା, ରହେନା ଲାଜ ଲଜ୍ଜା ଭୟ । ତାପାଇଁ ତୁମେ ହିଁ ବିଶ୍ୱ ଭୁବନମୟ । ଏମିତି କରି ତୁମ ସମ୍ମୁଖରେ ରହିବା-କେବଳ ତୁମ ଦ୍ୱାରା ପ୍ରାଣ ପୂର୍ଣ୍ଣ କରି ରଖିବା ତାର କାମ । ଏ ଦୟା ଯିଏ ପାଇଛି ତାର ଲୋଭର ସୀମା ନାହିଁ । ସକଳ ଲୋଭକୁ ସେ ତୁମକୁ ସ୍ଥାନ ଦେବା ପାଇଁ ଘୁଞ୍ଚାଇ ଦିଏ ।

## ୬୭

ସୁନ୍ଦର ତୁମି ଏସେ ଛିଲେ ଆଜ ପ୍ରାତେ
ଅରୁଣ ବରନ ପାରିଜାତ ଲୟେ ହାତେ ।

ନିଦ୍ରିତ ପୁରୀ, ପଥିକ ଛିଲ ନା ପଥେ,
ଏକା ଚଲି ଗେଲେ ତୋମାର ସୋନାର ରଥେ—
ବାରେକ ଥାମିୟା ମୋର ବାତାୟନ—ପାନେ
ଚେୟେଛିଲେ ତବ କରୁଣ ନୟନପାତେ ।
ସୁନ୍ଦର, ତୁମି ଏସେଛିଲେ ଆଜ ପ୍ରାତେ ।

ସ୍ୱପନ ଆମାର ଭରେ ଛିଲ କୋନ୍ ଗନ୍ଧେ,
ଘରେର ଆଁଧାର କେଁପେଛିଲ କୀ ଆନନ୍ଦେ,
ଧୁଲୟ—ଲୁଟାନୋ ନୀରବ ଆମାର ବୀଣା
ବେଜେ ଉଠେଛିଲ ଅନାହତ କୀ ଆଘାତେ ।

କତବାର ଆମି ଭେବେଛିନୁ ଉଠି—ଉଠି,
ଆଲସ ତ୍ୟଜିୟା ପଥେ ବାହିରଇ ଛୁଟି,
ଉଠିନୁ ଯଖନ ତଖନ ଗିୟେଛ ଚଲେ—
ଦେଖା ବୁଝି ଆର ହଲ ନା ତୋମାର ସାଥେ ।
ସୁନ୍ଦର, ତୁମି ଏସେ ଛିଲେ ଆଜ ପ୍ରାତେ ।

ତିନଧରିୟା
୧୭ ଜ୍ୟେଷ୍ଠ ୧୩୧୭

ଅରୁଣ ବର୍ଣ୍ଣ ପାରିଜାତ ଧରି ହେ ସୁନ୍ଦର, ତୁମେ ଆଜି ସକାଳେ ଆସିଥିଲ । ତୁମର ସୁବର୍ଣ୍ଣ ରଥରେ ପୁର ନିଦ୍ରାମଗ୍ନ ଥିବାବେଳେ, ପଥ ପଥିକହୀନ ହୋଇ ଥିବାବେଳେ ଚାଲିଗଲ । ଥରୁଟିଏ ମୋ ଝରକା ଆଡ଼କୁ ତମର କରୁଣ ନୟନ -ପାତରେ ଚାହିଁଥିଲ । ସୁନ୍ଦର ତୁମେ···।

ମୋର ସ୍ୱପ୍ନ କେଉଁ ଗନ୍ଧରେ ଭରିଯାଇଥିଲା, ଘରର ଅନ୍ଧାର କି ଆନନ୍ଦରେ କମ୍ପି ଉଠିଥିଲା, ଧୂଳି ଧୂସରିତ ମୋର ନୀରବ ବୀଣା ଅନାହତ କେଉଁ ଆଘାତରେ ବାଜି ଉଠିଥିଲା !

କେତେଥର ଭାବିଚି ଅଳସ ତେଜି ପଥକୁ ଛୁଟିଯିବି···ଯେତେବେଳେ ଉଠିଲି ସେତେବେଳେ ତମେ ଚାଲିଯାଇଛ । ତୁମ ସହିତ ଆଉ ଦେଖାହେଲାନି । ସୁନ୍ଦର ତୁମେ···।



# ୭୮

ଆମାର ଖେଲା ଯଖନ ଛିଲ ତୋମାର ସନେ
 ତଖନ କେ ତୁମି ତା କେ ଜାନତ ।
ତଖନ ଛିଲ ନା ଭୟ, ଛିଲ ନା ଲଜ୍ଜା ମନେ,
 ଜୀବନ ବହେ ଯେତ ଅଶାନ୍ତ ।
 ତୁମି ଭୋରେର ବେଲା ଡାକ ଦିୟେଛ କତ
 ଯେନ ଆମାର ଆପନ ସଖାର ମତୋ,
 ହେସେ ତୋମାର ସାଥେ ଫିରେଛିଲେମ ଛୁଟେ
 ସେଦିନ କତ-ନା ବନ-ବନାନ୍ତ ।
ଓଗୋ, ସେଦିନ ତୁମି ଗାଇତେ ଯେ-ସବ ଗାନ
 କୋନୋ ଅର୍ଥ ତାହାର କେ ଜାନତ ।
ଶୁଧୁ ସଙ୍ଗେ ତାରଇ ଗାଇତ ଆମାର ପ୍ରାଣ,
 ସଦା ନାଚତ ହୃଦୟ ଅଶାନ୍ତ ।
 ହଠାତ ଖେଲାର ଶେଷେ ଆଜକୀ ଦେଖି ଛବି—
 ସ୍ତବ୍ଧ ଆକାଶ, ନୀରବ ଶଶୀ ରବି,
 ତୋମାର ଚରଣପାନେ ନୟନ କରି ନତ
 ଭୁବନ ଦାଁଡ଼ିୟେ ଆଛେ ଏକାନ୍ତ ।

୧୭ ଜ୍ୟୈଷ୍ଠ ୧୩୧୭

ଯେତେବେଳେ ତୁମ ସହିତ ମୁଁ ଖେଳା କରୁଥିଲି, ଜାଣି ନ ଥିଲି ତୁମେ କିଏ । ସେତେବେଳେ ମନରେ ଭୟ ନଥିଲା, ଲାଜ ନ ଥିଲା । ଜୀବନ ଅଶାନ୍ତ ହୋଇ ବୋହି ଯାଉଥିଲା । ମୋର ସଖାପରି ତୁମେ ସକାଳେ କେତେ ଡାକିଛ- ତମ ସହିତ ସେଦିନ କେତେ ବଣ ଜଙ୍ଗଲ ଘୂରି ବୁଲିଥିଲି ।

ସେଦିନ ତୁମେ ଯେଉଁ ଗୀତ ସବୁ ଗାଉଥିଲ, କିଏ ତାର ଅର୍ଥ ଜାଣୁଥିଲା ! କେବଳ ତା ସହିତ ମୋର ପ୍ରାଣ ଗୀତ ଗାଉଥିଲା । ଅଶାନ୍ତ ହୃଦୟ ସଦା ଥିଲା ନୃତ୍ୟରତ । ଖେଳ ଶେଷରେ ଆଜି କଣ ଦେଖୁଛି-ସ୍ତବ୍ଧ ଆକାଶ, ନୀରବ ଚନ୍ଦ୍ର, ସୂର୍ଯ୍ୟ ଓ ସାରା ଭୁବନ ତୁମ ଚରଣରେ ନତ ନୟନରେ ଛିଡ଼ା ହୋଇଛି ।

# ୭୪

ଓଇ ରେ ତରୀ ଦିଲ ଖୁଲେ ।
ତୋର ବୋଝା କେ ନେବେ ତୁଲେ ।
ସାମନେ ଯଖନ ଯାବି ଓରେ
ଥାକ୍-ନା ପିଛନ ପିଛେ ପଡ଼େ—
ପିଠେ ତାରେ ବଇତେ ଗେଲି,
ଏକଲା ପଡ଼େ ରଇଲି କୂଲେ ।

ଘରେର ବୋଝା ଟେନେ ଟେନେ
ପାରେର ଘାଟେ ରାଖଲି ଏନେ,
ତାଇ-ଯେ ତୋରେ ବାରେ ବାରେ
ଫିରତେ ହଲ ଗେଲି ଭୁଲେ ।

ଡାକ୍‌ରେ ଆବାର ମାଝିରେ ଡାକ୍,
ବୋଝା ତୋମାର ଯାକ ଭେସେ ଯାକ୍,
ଜୀବନ ଖାନି ଉଜାଡ଼ କରେ
ସଁପେ ଦେ ତାର ଚରଣମୂଲେ ।

ତିନଧରିଆ
୧୮ ଜ୍ୟେଷ୍ଠ ୧୩୧୭

ହେଇ ଡଙ୍ଗା ମେଲଦେଲା । ତୋ ବୋଝ କିଏ ଉଠାଇବ ? ଆଗକୁ ଯେତେବେଳେ ଯିବୁ, ପଛରେ ପଛ କଥା ପଡ଼ି ରହୁ । ପିଠିରେ ସେସବୁ ବୋହି ଏକା କୂଳରେ ପଡ଼ିରହିଲୁ । ଘରର ବୋଝ ଟାଣି ଟାଣି ଘାଟରେ ରଖିଲୁ । ତେଣୁ ତୋତେ ଯେ ବାରମ୍ବାର ଫେରିବାକୁ ହେବ-ଭୁଲିଗଲୁ ।

ପୁଣି ନାଉରିଆକୁ ଡାକ । ବୋଝ ତୋର ଭାସିଯାଉ । ଜୀବନ ଉଜାଡ଼ କରି ତା ଚରଣରେ ସମର୍ପି ଦେ ।

## ୭୦

ଚିତ୍ତ ଆମାର ହାରାଲୋ ଆଜ
ମେଘେର ମାଝଖାନେ,
କୋଥାୟ ଛୁଟେ ଚଲେଛେ ସେ
କୋଥାୟ କେ ଜାନେ ।

ବିଜୁଲି ତାର ବୀଣାର ତାରେ
ଆଘାତ କରେ ବାରେ ବାରେ,
ବୁକେର ମାଝେ ବଜ୍ର ବାଜେ
କୀ ମହାତାନେ ।

ପୁଞ୍ଜ ପୁଞ୍ଜ ଭାରେ ଭାରେ
ନିବିଡ଼ ନୀଲ ଅନ୍ଧକାରେ
ଜଡ଼ାଲୋ ରେ ଅଙ୍ଗ ଆମାର
ଛଡ଼ାଲୋ ପ୍ରାଣେ ।

ପାଗଲ ହାଓୟା ନୃତ୍ୟେ ମାତି
ହଲ ଆମାର ସାଥେ ସାଥି,
ଅଟ୍ଟହାସେ ଧାୟ କୋଥା ସେ—
ବାରଣ ନା ମାନେ ।

ତିନଧରିୟା
୧୮ ଜ୍ୟେଷ୍ଠ ୧୩୧୭

ମେଘମାଳା ମଝିରେ ଚିତ୍ତ ମୋର ଆଜି ହଜିଯାଏ । କୁଆଡ଼େ ତାହା ଛୁଟିଚାଲିଛି କିଏ ଜାଣେ ? ତାର ବୀଣାତାରରେ ବିଜୁଳି ବାରମ୍ବାର ଆଘାତ କରେ । ବୁକୁରେ ବଜ୍ର ବାଜେ ମହା ଶବ୍ଦରେ ।

ନିବିଡ଼ ନୀଳ ଅନ୍ଧକାର ମୋ ଅଙ୍ଗକୁ ଜଡ଼ାଇ ଧରିଲା । ମୋର ପ୍ରାଣ ଛୁଡ଼ିଗଲା ।

ମୋ ସାଥିରେ ପାଗଳ ପବନ ନୃତ୍ୟରେ ମାତି ସାଥୀ ହେଲା । ଅଟ୍ଟହାସ୍ୟ କରି କୁଆଡ଼େ ସେ ଧାଏଁ, ବାରଣ ମାନେ ନା ।

## ୭୧

ଓଗୋ ମୌନ, ନା ଯଦି କଓ
　　　　ନାଇ କହିଲେ କଥା ।
ବକ୍ଷ ଭରି ବଇବ ଆମି
　　　　ତୋମାର ନୀରବତା ।
　　　　　　ସ୍ତବ୍ଧ ହୟେ ରଇବ ପଡ଼େ
　　　　　　ରଜନୀ ରୟ ଯେମନ କରେ
　　　　　　ଜ୍ୱାଲିୟେ ତାରା ନିମେଷହାରା
　　　　　　　　ଧୈର୍ଯ୍ୟେ ଅବନତା ।

ହବେ ହବେ ପ୍ରଭାତ ହବେ,
　　　　ଆଁଧାର ଯାବେ କେଟେ ।
ତୋମାର ବାଣୀ ସୋନାର ଧାରା
　　　　ପଡ଼ବେ ଆକାଶ ଫେଟେ ।
　　　　　　ତଖନ ଆମାର ପାଖିର ବାସାୟ
　　　　　　ଜାଗବେ କିଁ ଗାନ ତୋମାର ଭଷାୟ ।
　　　　　　ତୋମାର ତାନେ ଫୋଟାବେ ଫୁଲ
　　　　　　　　ଆମାର ବନଲତା ?

ତିନଧରିୟା
୧୮ ଜ୍ୟେଷ୍ଠ ୧୩୧୭

ହେ ମୌନ, ତୁମେ କଥା ନ କହିଲେ ନାହିଁ, ତୁମର ନୀରବତା ମୁଁ ହୃଦୟ ଭରି ବୋହିବି । ରାତ୍ରି ପରି ସ୍ତବ୍ଧ, ଧୈର୍ଯ୍ୟ ଅବନତ ହୋଇ ଅପଲକ ତାରା ଜଳାଇ ମୁଁ ପଡ଼ି ରହିବି ।

ପ୍ରଭାତ ହେବ, ଅନ୍ଧକାର କଟିଯିବ । ଆକାଶ ଫୁଟାଇ ସୁବର୍ଣ୍ଣ ଧାରା ବାଣୀ ତୁମର ଝରିବ । ସେତେବେଳେ ମୋର ପକ୍ଷୀ ବସାରେ ତୁମର ଗୀତ ଜାଗି ଉଠିବ କି ? ତୁମ ତାନରେ ମୋର ବନଲତା ଫୁଲ ଫୁଟାଇବ କି ?

ଯତବାର ଆଲୋ ଜ୍ବାଲତେ ଚାଇ
           ନିବେ ଯାୟ ବାରେ ବାରେ ।
ଆମାର ଜୀବନେ ତୋମାର ଆସନ
           ଗଭୀର ଅନ୍ଧକାରେ ।
                ଯେ ଲତାଟି ଆଛେ ଶୁକାୟେଛେ ମୂଲ—
                କୁଁଡ଼ି ଧରେ ଶୁଧୁ, ନାହିଁ ଫୋଟେ ଫୁଲ,
                ଆମାର ଜୀବନେ ତବ ସେବା ତାଇ
                     ବେଦନାର ଉପହାରେ ।
ପୂଜା ଗୌରବ ପୁଣ୍ୟବିଭବ
           କିଛି ନାହି, ନାହି ଲେଶ—
ଏ ତବ ପୂଜାରୀ ପରିୟା ଏସେଛେ
           ଲଜ୍ଜାର ଦୀନ ବେଶ ।
                ଉତ୍ସବେ ତାର ଆସେ ନାଇ କେହ,
                ବାଜେ ନାଇ ବାଁଶି, ସାଜେ ନାଇ ଗେହ—
                କାଁଦିୟା ତୋମାୟ ଏନେଛେ ଡାକିୟା
                     ଭଙ୍ଗା ମନ୍ଦିର ଦ୍ବାରେ ।

ତିନଧରିୟା

୨୧ ଜ୍ୟେଷ୍ଠ ୧୩୧୭

ଯେତେଥର ଆଲୁଅ ଜଳାଇବାକୁ ଚାହେଁ, ସେତେଥର ଲିଭିଯାଉଛି । ମୋ ଜୀବନରେ ତୁମର ସ୍ଥାନ ଗଭୀର ଅନ୍ଧକାରରେ । ଯେଉଁ ଲତାଟି ଅଛି ତାର ମୂଳ ଶୁଖିଯାଇଛି । କଢ଼ି ଧରେ ମାତ୍ର ଫୁଲ ଫୁଟେନା । ମୋ ଜୀବନରେ ତୁମର ସେବା, ତେଣୁ ବେଦନାର ଉପହାର ।

ତୁମର ଏ ପୂଜାରୀ ପାଖରେ ପୂଜା-ଗୌରବ ନାହିଁ ବା ନାହିଁ ପୁଣ୍ୟର ବିଭବ । ଲଜ୍ଜାର ଦୀନବେଶ ପିନ୍ଧି ସେ ଆସିଛି । ତାର ଉତ୍ସବରେ କେହି ଆସନ୍ତି ନାହିଁ । ନା ସାଜସଜ୍ଜା ନା ବଂଶୀବାଦନ ହୁଏ ? ତୁମକୁ ଗୋଟେ ଭଙ୍ଗା ମନ୍ଦିରକୁ କାନ୍ଦି କାନ୍ଦି ଡାକି ଆଣିଛି ।

## ୭୩

ସବା ହତେ ରାଖବ ତୋମାୟ
ଆଡ଼ାଲ କ'ରେ
ହେନ ପୂଜାର ଘର କୋଥା ପାଇ
ଆମାର ଘରେ ।
ଯଦି ଆମାର ଦିନେ ରତେ
ଯଦି ଆମାର ସବାର ସାଥେ
ଦୟା କ'ରେ ଦାଓ ଧରା ତୋ
ରାଖବ ଧରେ ।
ମାନ ଦିବ ଯେ ତେମନ ମାନୀ
ନଇ ତୋ ଆମି,
ପୂଜା କରି ସେ ଆୟୋଜନ
ନାଇ ତୋ ସ୍ୱାମୀ ।
ଯଦି ତୋମାୟ ଭାଲୋବାସି
ଆପନି ବେଜେ ଉଠବେ ବାଁଶି,
ଆପନି ଫୁଟେ ଉଠବେ କୁସୁମ
କାନନ ଭ'ରେ ।

୨୧ ଜ୍ୟେଷ୍ଠ ୧୩୧୭

ମୋ ଘରେ ଏପରି ପୂଜାର ଘର କେଉଁଠୁ ପାଇବି ଯେ ତମକୁ ସମସ୍ତଙ୍କଠୁ ଆଡ଼୍ ଆଳରେ ରଖିବି ? ତୁମେ ଯଦି ଦିନ-ରାତି, ମୋ ଆପଣାର ସଭିଙ୍କ ଗହଣରେ ଦୟାକରି ଧରାଦେବ ତ, ଧରି ରଖିବି ।

ତୁମକୁ ପୂଜା ଓ ମାନ ଦେବାର ସାମର୍ଥ୍ୟ ମୋର ନାହିଁ । ଯଦି ତମକୁ ଭଲପାଏଁ, ଏ ବଂଶୀ ଆପଣାଛୁଏଁ ବାଜି ଉଠିବ । ବଗିଚ୍ଚରେ ଆପଣାଛୁଁ ଏ ଫୁଲ ଫୁଟିବ ।

# ୭୪

ବଜ୍ରେ ତୋମାର ବାଜେ ବାଁଶି,
　　　　ସେ କି ସହଜ ଗାନ ।
ସେଇ ସୁରେତେ ଜାଗବ ଆମି
　　　　ଦାଓ ମୋର ସେଇ କାନ ।
　　　　　　ଭୁଲବ ନା ଆର ସହଜେତେ
　　　　　　ସେଇ ପ୍ରାଣେ ମନ ଉଠବେ ମେତେ
　　　　　　ମୃତ୍ୟୁମାଝେ ଢାକା ଆଛେ
　　　　　　　　ଯେ ଅନ୍ତହୀନ ପ୍ରାଣ ।
ସେ ଝଡ଼ ଯେନ ସଇ ଆନନ୍ଦେ
　　　　ଚିତ୍ତ ବୀଣାର ତାରେ
ସପ୍ତ ସିନ୍ଧୁ ଦଶଦିଗନ୍ତ
　　　　ନାଚାଓ ଯେ ଝଙ୍କାରେ ।
　　　　　　ଆରାମ ହତେ ଛିନ୍ନ କ'ରେ
　　　　　　ସେଇ ଗଭୀରେ ଲଓ ଗୋ ମୋରେ
　　　　　　ଅଶାନ୍ତିର ଅନ୍ତରେ ଯେଥାୟ
　　　　　　　　ଶାନ୍ତି ସୁମହାନ ।

ତିନଧରିୟା
୨୧ ଜ୍ୟେଷ୍ଠ ୧୩୧୭

ମୋତେ ସେପରି କାନ ଦିଅ ଯେପରି ତୁମର ବଜ୍ର ଧ୍ୱନିରୂପୀ ବଂଶୀସ୍ୱନ ଶୁଣି ଜାଗି ଉଠିବି । ମୃତ୍ୟୁରେ ଢଙ୍କା ଅନ୍ତହୀନ ଯେ ପ୍ରାଣ, ତାହା ଜାଗି ଉଠିବ ମନରେ ।

ସପ୍ତସିନ୍ଧୁ ଓ ଦଶଦିଗନ୍ତ ଯେଉଁ ଝଙ୍କାରରେ ନଚୁଅ, ସେଇ ଝଡ଼-ଝଙ୍କାରକୁ ଚିତ୍ତବୀଣାର ତାରରେ ଯେପରି ଆନନ୍ଦରେ ସହିଯାଏ । ମୋତେ ସୁଖ ଆରାମରୁ ଦୂରେଇ ସେଇ ଗମ୍ଭୀରତାକୁ ନେଇଯାଅ ଅଶାନ୍ତି-ଅନ୍ତରରେ ଯେଉଁଠି ମହାନ ଶାନ୍ତି ରହିବ ।

## ୭୫

ଦୟା ଦିୟେ ହବେ ଗୋ ମୋର
ଜୀବନ ଧୁତେ ।
ନଇଲେ କି ଆର ପାରବ ତୋମାର
ଚରଣ ଛୁଁତେ ।
ତୋମାୟ ଦିତେ ପୂଜାର ଡାଲି
ବେରିୟେ ପଡ଼େ ସକଲ କାଲି,
ପରାନ ଆମାର ପାରି ନେ ତାଇ
ପାୟେ ଥୁତେ ।
ଏତ ଦିନ ତୋ ଛିଲ ନା ମୋର
କୋନୋ ବ୍ୟଥା,
ସର୍ବ ଅଙ୍ଗେ ମାଖା ଛିଲ
ମଲିନତା ।
ଆଜ ଓଇ ଶୁଭ୍ର କୋଲେର ତରେ
ବ୍ୟାକୁଲ ହୃଦୟ କେଁଦେ ମରେ;
ଦିୟୋ ନା ଗୋ ଦିୟୋ ନା ଆର
ଧୁଲାୟ ଶୁତେ ।

କଲିକତା
୨୪ ଜ୍ୟେଷ୍ଠ ୧୩୧୭

ମୋ ଜୀବନକୁ ତମ କରୁଣା ଦ୍ୱାରା ଧୋଇଦିଅ । ନଚେତ୍ ତୁମ ଚରଣ ଛୁଇଁବି କିପରି ? ତୁମର ପୂଜା ଦେବାକୁ ଡାଲିରେ କାଳିମା ଭରିଯାଏ । ତେଣୁ ମୋ ପ୍ରାଣ ତୁମ ପାଦତଳେ ମୁଁ ସମର୍ପି ପାରୁନାହିଁ ।

ଏତେ ଦିନ ମୋର କୌଣସି ବ୍ୟଥା ନ ଥିଲା । ମଳିନତା ସକଳ ଅଙ୍ଗରେ ମଖା ହୋଇଥିଲା । ଆଜି ସେଇ ଶୁଭ୍ର କୋଳରେ ଶୋଇବାକୁ ବ୍ୟାକୁଳ ହୃଦୟ ମୋର କାନ୍ଦି ମରେ । ମୋତେ ଆଉ ଧୂଳିରେ ଶୋଇବାକୁ ଦିଅନା ।

## ୭୬

ସଭ ଯଖନ ଭଙ୍ଗବେ ତଖନ

ଶେଷେର ଗାନ କି ଯାବ ଗେୟେ ।

ହୟତୋ ତଖନ କଣ୍ଠହାର

ମୁଖେର ପାନେ ରବ ଚେୟେ ।

ଏଖନୋ ଯେ ସୁର ଲଗେ ନି,

ବାଜବେ କି ଆର ସେଇ ରଗିଣୀ—

ପ୍ରେମେର ବ୍ୟଥା ସୋନାର ତାନେ

ସନ୍ଧ୍ୟାଗଗନ ଫେଲବେ ଛେୟେ ?

ଏତଦିନ ଯେ ସେଧେଛି ସୁର

ଦିନେ ରତେ ଆପନ—ମନେ,

ଭଗ୍ୟେ ଯଦି ସେଇ ସାଧନା

ସମାପ୍ତ ହୟ ଏଇ ଜୀବନେ—

ଏ ଜନମେର ପୂର୍ଣ ବାଣୀ

ମାନସବନେର ପଦ୍ମଖାନି

ଭସାବ ଶେଷ ସାଗର-ଗାନେ

ବିଶ୍ୱଗାନେର ଧାର ବେୟେ ।

କଲିକତା

୨୪ ଜ୍ୟେଷ୍ଠ ୧୩୧୭

ସଭା ଶେଷରେ ମୁଁ କଣ ଶେଷ ସଙ୍ଗୀତ ଗାଇପାରିବି ? ହୁଏତ ସେତେବେଳେ ତୁମ ମୁହଁକୁ ଚାହିଁ ରହିଥିବି । ଯେଉଁ ସୁର ଆଜିଯାଏଁ ଗୀତ ହୋଇନି ସେ ରାଗିଣୀ ଆଉ କଣ ବାଜିବ ? ପ୍ରେମର ବ୍ୟଥା ସନ୍ଧ୍ୟା ଗଗନକୁ କଣ ଛାଇଦେବ ?

ଯେଉଁ ସୁର ଦିନରାତି ଆପଣା ଛାଏଁ ସାଧୁଛି ଏ ଜୀବନରେ ତାହା ଯଦି ସମାପ୍ତ ହୁଅନ୍ତା ! ଏ ଜନ୍ମର ସଂପୂର୍ଣ୍ଣ ତଥା ମାନସ ବନର କମଳକୁ, ବିଶ୍ୱ ଗାନର ଧାରରେ ମୁଁ ଯଦି ସାଗର ଆଡ଼କୁ ବୁହାଇ ଦିଅନ୍ତି !

## ୬୭

ଚିରଜନମେର ବେଦନା,
ଓହେ ଚିର ଜୀବନେର ସାଧନା,
ତୋମାର ଆଗୁନ ଉଠୁକ ହେ ଜ୍ୱଲେ,
କୃପା କରିୟୋ ନା ଦୁର୍ବଲ ବଲେ
ଯତ ତାପ ପାଇ ସହିବାରେ ଚାଇ—
ପୁଡ଼େ ହୋକ ଛାଇ ବାସନା ।

ଅମୋଘ ଯେ ଡାକ ସେଇ ଡାକ ଦାଓ,
ଆର ଦେରି କେନ ମିଛେ ।
ଯା ଆଛେ ବାଁଧନ ବକ୍ଷ ଜଡ଼ାୟେ
ଛିଁଡେ ପଡ଼େ ଯାକ ପିଛେ ।

ଗରଜି ଗରଜି ଶଂଖ ତୋମାର
ବାଜିୟା ବାଜିୟା ଉଠୁକ ଏବାର,
ଗର୍ବ ଟୁଟିୟା ନିଦ୍ରା ଛୁଟିୟା
ଜାଗୁକ ତୀବ୍ର ଚେତନା ।

କଲିକତା
୨୬ ଜ୍ୟେଷ୍ଠ ୧୩୧୭

ଚିର ଜୀବନର ବେଦନା ମୋର ଚିର ଜୀବନର ସାଧନା । ତୁମର ଅଗ୍ନି ମୋ ଭିତରେ ପ୍ରଜ୍ୱଳିତ ହୋଇଉଠୁ । ଦୁର୍ବଳ ବୋଲି ମୋତେ କୃପା କରନା । ଯେତେ ତାପ ସବୁ ସହିବାକୁ ଚାହେଁ । ମୋର ସକଳ ବାସନାପୋଡ଼ି ପାଉଁଶହେଉ ।

ଅଯଥା ବିଳମ୍ବ ନକରି ଅମୋଘ ଡାକରେ ମୋତେ ଡାକିଦିଅ । ଯାହା ବନ୍ଧନ ଅଛି ଛିନ୍ନ ପଛରେ ପଡ଼ିରହୁ । ତମର ଶଂଖ ଏଥର ଗର୍ଜି ବାଜିଉଠୁ । ମୋର ଗର୍ବ ଭାଙ୍ଗି, ନିଦ୍ରା ଛାଡ଼ି ତୀବ୍ର ଚେତନା ଜାଗ୍ରତ ହେଉ ।

## ୭୮

ତୁମି ଯଖନ ଗାନ ଗାହିତେ ବଲ'
ଗର୍ବ ଆମାର ଭରେ ଓଠେ ବୁକେ,
ଦୁଇ ଆଁଖି ମୋର କରେ ଛଲଛଲ
ନିମେଷହାରା ଚେୟେ ତୋମାର ମୁଖେ ।

କଠିନ କଟୁ ଯା ଆଛେ ମୋର ପ୍ରାଣେ
ଗଲିତେ ଚାୟ ଅମୃତମୟ ଗାନେ,
ସବ ସାଧନା ଆରାଧନା ମମ
ଉଡ଼ିତେ ଚାୟ ପାଖିର ମତୋ ସୁଖେ ।

ତୃପ୍ତ ତୁମି ଆମାର ଗୀତରାଗେ,
ଭାଲେ ଲାଗେ ତୋମାର ଭାଲେ ଲାଗେ—
ଜାନି ଆମି ଏଇ ଗାନେରଇ ବଲେ
ବସି ଗିୟେ ତୋମାରି ସମ୍ମୁଖେ ।

ମନ ଦିୟେ ଯା'ର ନାଗାଲ ନାହି ପାଇ
ଗାନ ଦିୟେ ସେଇ ଚରଣ ଛୁୟେଁ ଯାଇ,
ସୁରେର ଘୋରେ ଆପନାକେ ଯାଇ ଭୁଲେ
ବନ୍ଧୁ ବ'ଲେ ଡାକି ମୋର ପ୍ରଭୁକେ ।

୨୭ ଜ୍ୟେଷ୍ଠ ୧୩୧୭

ତୁମେ ମୋତେ ଯେତେବେଳେ ଗୀତ ଗାଇବାକୁ କୁହ ମୋ ବୁକୁ ଗର୍ବରେ ଫୁଲିଉଠେ । ମୋର ଦୁଇ ଆଖି ଛଳଛଳ କରିଉଠେ–ନିଷ୍ପଲକ ନୟନରେ ମୁଁ ତୁମ ମୁଖକୁ ଚାହିଁ ରହେ । ମୋ ପ୍ରାଣରେ କଟୁ ଓ କଠିଣ ଯାହା ଅଛି, ଅମୃତମୟ ଗୀତରେ ତାହା ତରଳିବାକୁ ଚାହେଁ । ମୋର ସକଳ ସାଧନା, ଆରାଧନା ସହଜରେ ପକ୍ଷୀପରି ଉଡ଼ି ଯିବାକୁ ଚାହେଁ ।

ମୋ ଗୀତରେ ତୁମେ ତୃପ୍ତ । ଜାଣେ, ଏ ଗୀତ ବଳରେ ମୁଁ ତୁମ ସମ୍ମୁଖରେ ବସେ । ଯାହାର ସାନ୍ନିଧ୍ୟ ମନ ଅର୍ପଣ କରି ମୁଁ ପାଏ ନାହିଁ, ତାହାର ଚରଣ ଗୀତ ବଳରେ ଛୁଇଁ ପାରେଁ । ସୁର ବଳରେ ଆପଣାକୁ ଭୁଲି ପ୍ରଭୁଙ୍କୁ ବି ବନ୍ଧୁ ବୋଲି ଡାକେ ।

ধায় যেন মোর সকল ভালোবাসা
প্রভু, তোমার পানে, তোমার পানে, তোমার পানে ।
যায় যেন মোর সকল গভীর আশা
প্রভু, তোমার কানে, তোমার কানে, তোমার কানে ।
চিত্ত মম যখন যেথায় থাকে
সাড়া যেন দেয় সে তোমার ডাকে,
যত বাধা সব টুটে যায় যেন
প্রভু, তোমার টানে, তোমার টানে, তোমার টানে ।
বাহিরের এই ভিক্ষাভরা থালি
এবার যেন নিঃশেষে হয় খালি—
অন্তর মোর গোপনে যায় ভরে
প্রভু, তোমার দানে, তোমার দানে, তোমার দানে ।
হে বন্ধু মোর, হে অন্তরতর
এ জীবনে যা-কিছু সুন্দর
সকলই আজ বেজে উঠুক সুরে
প্রভু, তোমার গানে, তোমার গানে, তোমার গানে ।

কলিকতা
২৮ জ্যৈষ্ঠ ১৩১৭

ପ୍ରଭୁ ! ମୋର ସମସ୍ତ ପ୍ରେମ ତୁମ ଆଡ଼କୁ ଯାଉ, ମୋର ସମସ୍ତ ଆଶା ତୁମ କର୍ଣ୍ଣଗୋଚର ହେଉ ।

ମୋ ମନ ଯେତେବେଳେ ଯେଉଁଠି ଥାଉନା କାହିଁକି ତୁମ ଡାକରେ ଜବାବ ଦେଉ । ତୁମ ଆକର୍ଷଣରେ ଯେତେ ବାଧା ସବୁ ଯେପରି ଚୂର୍ଣ୍ଣ ଯାଉ ।

ବାହ୍ୟ ଭିକ୍ଷାରେ ଭର୍ତ୍ତି ଏ ଥାଳ ଯେପରି ନିଃଶେଷ ହୋଇ ଖାଲିଯାଉ । ତୁମ ଦାନରେ ମୋ ଅନ୍ତର ଗୋପନରେ ଭରିଯାଉ ।

ହେ ବନ୍ଧୁ ମୋର, ହେ ଅନ୍ତରତର, ଏ ଜୀବନରେ ଯାହା କିଛି ସୁନ୍ଦର ସେ ସବୁ କିଛି ଆଜି ତୁମ ଗୀତରେ ବାଜିଉଠୁ ।

## ୮୦

ତାର ଦିନେର ବେଲା ଏସେଛିଲ
ଆମାର ଘରେ—
ବଲେଛିଲ, 'ଏକଟି ପାଶେ
ରଇବ ପ'ଡ଼େ ।'
ବଲେଛିଲ, 'ଦେବତା ସେବାୟ
ଆମାର ହବ ତୋମାର ସହାୟ—
ଯା-କିଛୁ ପାଇ ପ୍ରସାଦ ଲବ
ପୂଜାର ପରେ' ।
ଏମନି କରେ ଦରିଦ୍ର କ୍ଷୀଣ
ମଲିନ ବେଶେ
ସଂକୋଚେତେ ଏକଟି କୋଣେ
ରଇଲ ଏସେ ।
ରାତେ ଦେଖି ପ୍ରବଲ ହୟେ
ପଶେ ଆମାର ଦେବାଲୟେ,
ମଲିନ ହାତେ ପୂଜାର ବଲି
ହରଣ କରେ ।

ବୋଲପୁର
୨୯ ଜ୍ୟେଷ୍ଠ ୧୩୧୭

ଥରେ ଦିନବେଳା ସେ' ମୋ ଘରକୁ ଆସିଥିଲେ । କହିଥିଲେ, ଘରର ଗୋଟିଏ କୋଣରେ ପଡ଼ି ରହିବ । ଦେବତା ସେବାରେ ତୁମକୁ ସାହାଯ୍ୟ କରିବ ଓ ପୂଜା ପରେ ପ୍ରସାଦ ପାଇ ସନ୍ତୁଷ୍ଟ ରହିବ ।

ଏପରି ସେ ଦରିଦ୍ର, ମଳିନ, କ୍ଷୀଣ ବେଶରେ ସଂକୋଚେ ଗୋଟିଏକୋଣରେ ପଡ଼ି ରହିଲା । ରାତିରେ ଦେଖିଲି, ପ୍ରତାପରେ ସେ ମୋ ଦେବାଳୟରେ ପଶି ପୂଜା ନୈବେଦ୍ୟ ହରଣ କରୁଛି ।

## ୮୧

ତାଗ  ତୋମାର ନାମେ ବାଟେର ମାଝେ
    ମାସୁଲ ଲୟ ଯେ ଧରି,
  ଦେଖି ଶେଷେ ଘାଟେ ଏସେ
    ନାଇକୋ ପାରେର କଡ଼ି ।
  ତାରା ତୋମାର କାଜେର ଭାନେ
  ନାଶ କରେ ଗୋ ଧନେ ପ୍ରାଣେ,
  ସାମାନ୍ୟ ଯା ଆଛେ ଆମାର
    ଲୟ ତା ଅପହରି ।
  ଆଜକେ ଆମି ଚିନେଛି ସେଇ
    ଛଦ୍ମବେଶୀ-ଦଲେ,
  ତାରାଓ ଆମାୟ ଚିନେଛେ ହାୟ
    ଶକ୍ତିବିହୀନ ବ'ଲେ ।
  ଗୋପନ ମୂର୍ତ୍ତି ଛେଡ଼େଛେ ତାଇ,
  ଲଜ୍ଜାଶରମ ଆର କିଛୁ ନାଇ,
  ଦାଁଡ଼ିୟେଛେ ଆଜ ମାଥା ତୁଲେ
    ପଥ ଅବରୋଧ କରି ।

ବୋଲପୁର
୨୯ ଜ୍ୟେଷ୍ଠ ୧୩୧୭

ସେମାନେ ବାଟରେ ତୁମ ନାମରେ ମାସୁଲ ଆଦାୟ କରନ୍ତି, ଶେଷରେ ଘାଟକୁ ଆସି ଦେଖେଁ ପାରହେବାପାଇଁ କଉଡ଼ିନାହିଁ । ତୁମ କାମ ନାଁରେ ସେମାନେ ଧନେ ପ୍ରାଣେ ନାଶ କରନ୍ତି, ସାମାନ୍ୟ ଯାହା ଅଛି ତାହାକୁ ଅପହରଣ କରି ନିଅନ୍ତି ।

ସେଇ ଛଦ୍ମବେଶୀ ଦଳକୁ ଆଜ ମୁଁ ଚହ୍ନିଛି । ସେମାନେ ମଧ୍ୟ ମୋତେ ଶକ୍ତି ବିହୀନ ବୋଲି ଚହ୍ନିଛନ୍ତି । ତେଣୁ ଅଉ କିଛି ଲଜ୍ୟା ସରମ ଗୋପନତା ଛାଡ଼ି, ସେମାନେ ଆଜ ମଥାଟେକ ପଥ ଅବରୋଧ କରି ଠିଆ ହୋଇଛନ୍ତି ।

# ୮୨

ଏଇ ଜ୍ୟୋତ୍ସ୍ନାରତେ ଜାଗେ ଆମାର ପ୍ରାଣ,
ପାଶେ ତୋମାର ହବେ କି ଆଜ ସ୍ଥାନ—
ଦେଖତେ ପାବ ଅପୂର୍ବ ସେଇ ମୁଖ,
ରଇବେ ଚେୟେ ହୃଦୟ ଉତ୍ସୁକ,
ବାରେ ବାରେ ଚରଣ ଘିରେ ଘିରେ
ଫିରବେ ଆମାର ଅଶ୍ରୁଭରା ଗାନ ?

ସାହସ କରେ ତୋମାର ପଦମୂଲେ
ଆପନାରେ ଆଜ ଧରି ନାଇ ଯେ ତୁଲେ,
ପଡ଼େ ଆଛି ମାଟିତେ ମୁଖ ରେଖେ
ଫିରିୟେ ପାଛେ ଦାଓ ଏ ଆମାର ଦାନ ।

ଆପନି ଯଦି ଆମାର ହାତେ ଧରେ
କାଛେ ଏସେ ଉଠତେ ବଲ' ମୋରେ
ତବେ ପ୍ରାଣେର ଅସୀମ ଦରିଦ୍ରତା
ଏଇ ନିମେଷେଇ ହବେ ଅବସାନ ।

ବୋଲପୁର
୨୯ ଜ୍ୟେଷ୍ଠ ୧୩୧୭

ଏଇ ଜ୍ୟୋତ୍ସ୍ନା ରାତିରେ ମୋର ପ୍ରାଣ ଜାଗ୍ରତ, ପାଖରେ ତୁମର ଆଜି ସ୍ଥାନ ପାଇବି କି ? ସେଇ ଅପୂର୍ବ ମୁଖ ଦେଖିବାକୁ ପାଇବି, ଉତ୍ସୁକ ହୃଦୟ ଚାହିଁ ରହିବ । ଚରଣକୁ ଘେରି ଘେରି ବାରମ୍ବାର ମୋର ଅଶ୍ରୁଭରା ଗାନ ଗୁଡ଼ାଇହେବ ?

ସାହସ କରି ଆଜି ତୁମ ପଦ ମୂଳରେ ନିଜକୁ ଟେକି ଧରିନାହିଁ, ମାଟିରେ ମୁହଁ ରଖି ପଡ଼ି ଅଛି, କାଳେ ମୋର ଏ ଦାନ ତମେ ଫେରାଇ ଦେବ ।

ନିଜେ ଯଦି ମୋର ହାତ ଧରି ପାଖକୁ ଆସି ଉଠିବାକୁ କୁହ, ତାହେଲେ ପ୍ରାଣର ଅସୀମ ଦରିଦ୍ରତାର ଏଇ ନିମିଷରେଇ ଅବସାନ ହେବ ।

## ୮୩

କଥା ଛିଲ ଏକ-ତରୀତେ କେବଲ ତୁମି ଆମି
ଯାବ ଅକାରଣେ ଭେସେ କେବଲ ଭେସେ,
ତ୍ରିଭୁବନେ ଜାନବେ ନା କେଉ ଆମରା ତୀର୍ଥଗାମୀ
କୋଥାୟ ଯେତେଛି କୋନ୍ ଦେଶେ ସେ କୋନ୍ ଦେଶେ ।
କୂଲହାରା ସେଇ ସମୁଦ୍ର-ମାଝଖାନେ
ଶୋନାବ ଗାନ ଏକଲା ତୋମାର କାନେ,
ଢେଉୟେର ମତନ ଭାଷା-ବାଁଧନ-ହାରା
ଆମାର ସେଇ ରାଗିଣୀ ଶୁନବେ ନୀରବ ହେସେ ।

ଆଜଓ ସମୟ ହୟ ନି କି ତାର, କାଜ କି ଆଛେ ବାକି ।
ଓଗୋ ଓଇ-ଯେ ସନ୍ଧ୍ୟା ନାମେ ସାଗର ତୀରେ ।
ମଲିନ ଆଲୋୟ ପାଖା ମେଲେ ସିନ୍ଧୁପାରେର ପାଖି
ଆପନ କୁଲାୟ-ମାଝେ ସବାଇ ଏଲ ଫିରେ ।
କଖନ ତୁମି ଆସବେ ଘାଟେର 'ପରେ
ବାଁଧନଟୁକୁ କେଟେ ଦେବାର ତରେ ।
ଅସ୍ତରବିର ଶେଷ ଆଲୋଟିର ମତୋ
ତରୀ ନିଶୀଥ-ମାଝେ ଯାବେ ନିରୁଦ୍ଦେଶେ ।

ବୋଲପୁର
୩୦·ଜ୍ୟେଷ୍ଠ ୧୩୧୭

କଥାଥିଲା ଏକ ଡଙ୍ଗାରେ କେବଳ ତୁମେ ଓ ମୁଁ ଅକାରଣ କେବଳ ଭାସି-ଯିବା । ତ୍ରିଭୁବନରେ କେହି ଜାଣିବେ ନାହିଁ ଯେ ତୀର୍ଥଗାମୀ ଆମେ କେଉଁ ଦେଶକୁ ଯାଉଛୁ । କୂଳହରା ସେଇ ସମୁଦ୍ର ମଝିରେ ଏକା ତୁମର କାନରେ ଗୀତ ଶୁଣାଇବି । ଢେଉପରି ଭାଷା-ବନ୍ଧନ-ହରା ମୋର ସେଇ ରାଗିଣୀ ତୁମ ସହାସ୍ୟ ନୀରବତାରେ ଶୁଣିବ ।

ଆଜିବି କଣ ସେ ସମୟ ହୋଇନି, କି କାମ ବାକି ଅଛି ? ଆଗୋ, ଏଇଯେ ସାଗର ତୀରରେ ସନ୍ଧ୍ୟା ନଇଁ ଆସୁଛି । ସିନ୍ଧୁପାରର ପକ୍ଷୀ ମଳିନ ଆଲୋକରେ ପକ୍ଷ ମେଲୁଛି, ଆପଣା କୁଳାୟକୁ ସମସ୍ତେ ଫେରିଲେ । ତୁମେ କେତେବେଳେ ଘାଟକୁ ଆସିବ, ବନ୍ଧନ ଟିକକ କାଟିଦେବାପାଇଁ । ଅସ୍ତରବିର ଶେଷ ଆଲୋକଟି ପରି ମଝି ରାତିରେ ତରୀ ନିରୁଦ୍ଦେଶ ଭାସିଯିବ ।

# ୮୪

ଆମାର ଏକଲା ଘରେର ଆଡ଼ାଲ ଭେଙ୍ଗେ
ବିଶାଲ ଭବେ
ପ୍ରାଣେର ରଥେ ବାହିର ହତେ
ପାରବ କବେ ।
ପ୍ରବଲ ପ୍ରେମେ ସବାର ମାଝେ
ଫିରବ ଧେୟେ ସକଲ କାଜେ,
ହାଟେର ପଥେ ତୋମାର ସାଥେ
ମିଲନ ହବେ ।
ପାଣେର ରଥେ ବାହିର ହତେ
ପାରବ କବେ ।

ନିଖିଲ ଆଶା—ଆକାଙ୍‌କ୍ଷା-ମୟ
ଦୁଃଖେ ସୁଖେ,
ଝାଁପ ଦିୟେ ତାର ତରଙ୍ଗପାତ
ଧରବ ବୁକେ ।
ମନ୍ଦ-ଭଲେର ଆଘାତ-ବେଗେ
ତୋମାର ବୁକେ ଉଠବ ଜେଗେ,
ଶୁନବ ବାଣୀ ବିଶ୍ୱ ଜନେର
କଲରବେ ।
ପ୍ରାଣେର ରଥେ ବାହିର ହତେ
ପାରବ କବେ ।

୧ ଆଷାଢ଼ ୧୩୧୭

ମୋର ଏକାକୀ ଘରର ଆଡ଼୍‌ଆଳ ଭାଙ୍ଗି ଏଇ ବିଶାଳ ଭବରେ ପ୍ରାଣର ରଥରେ କେବେ ବାହାରି ପାରିବି । ପ୍ରବଳ ପ୍ରେମରେ ସମସ୍ତଙ୍କ ମଧ୍ୟରେ ସବୁକାମରେ ଧାଇଁ ବୁଲିବି । ହାଟର ପଥରେ ତୁମ ସହ ମିଳନ ହବ, କେବେ ପ୍ରାଣର ରଥରେ ବାହାରି ପାରିବି ?

ଆଶା-ଆକାଂକ୍ଷାମୟ ନିଖିଳର ସୁଖ-ଦୁଃଖ ମଧ୍ୟକୁ ଡେଇଁପଡ଼ି ତାର ତରଙ୍ଗ-ଘାତକୁ ବକ୍ଷରେ ବହନ କରିବି । ଭଲ-ମନ୍ଦର ଆଘାତ ବେଗରେ ତୁମ ବୁକୁରେ ଜାଗି ଉଠିବି, ବିଶ୍ୱଜନର କଳରବରେ ତୁମର ବାଣୀ ଶୁଣିବି । କେବେ ପ୍ରାଣର ରଥରେ ବାହାରି ପାରିବି ?



## ୮୫

ଏକା ଆମି ଫିରବ ନା ଆର
ଏମନ କରେ—
ନିଜେର ମନେ କୋଣେ କୋଣେ
ମୋହେର ଘୋରେ ।
ତୋମାୟ ଏକଲା ବାହୁର ବାଁଧନ ଦିୟେ
ଛୋଟୋ କରେ ଘିରତେ ଗିୟେ
ଆପନାକେ ଯେ ବାଁଧି କେବଲ
ଆପନ ଡୋରେ ।
ଯଖନ ଆମି ପାବ ତୋମାୟ
ନିଖିଲ-ମାଝେ
ସେଇ ଖନେ ହୃଦୟେ ପାବ
ହୃଦୟରାଜେ ।
ଏଇ ଚିତ୍ତ ଆମାର ବୃନ୍ତ କେବଲ,
ତାରି 'ପରେ ବିଶ୍ୱକମଲ—
ତାରି 'ପରେ ପୂର୍ଣ ପ୍ରକାଶ
ଦେଖାଓ ମୋରେ ।

୨ ଆଷାଢ଼ ୧୩୧୭

ଏମିତ ଭାବରେ ନିଜ ମନର କୋଣେ କୋଣେ ମୋହାଚ୍ଛନ୍ନ ହୋଇ ଏକା ଆଉ ଘୁରି ବୁଲିବି ନାହିଁ । ତୁମକୁ ସ୍ନେହଭାବ ବାହୁର ବନ୍ଧନ ଦେଇ ଏକାକୀ ଘେରି ନେବାକୁ ଯାଇ ଆପଣାକୁହିଁ ଆପଣା ଡୋରରେ କେବଳ ବାନ୍ଧୁଛି ।

ଯେଉଁବେଳେ ତୁମକୁ ନିଖିଳ ମଧ୍ୟରେ ପାଇବି, ସେଇ ମୁହୂର୍ତ୍ତରେ ହୃଦୟରେ ହୃଦୟରାଜଙ୍କୁ ପାଇବି । ଏଇ ଚିତ୍ତ ମୋର କେବଳ ବୃନ୍ତଟିଏ, ତାରି ଉପରେ ବିଶ୍ୱକମଳର ପୂର୍ଣ୍ଣ ପ୍ରକାଶ ତୁମର ଦେଖାଅ ।

# ୮୭

ଆମାରେ ଯଦି ଜାଗାଲେ ଆଜି, ନାଥ,
ଫିରେ ନା ତବେ ଫିରେ ନା, କରେ
କରୁଣ ଆଁଖିପାତ ।

ନିବିଡ଼ ବନଶାଖାର 'ପରେ
ଆଷାଢ଼-ମେଘେ ବୃଷ୍ଟି ଝରେ,
ବାଦଲ ଭରା ଆଲସ ଭରେ
ଘୁମାୟେ ଆଛେ ରାତ ।
ଫିରେ ନା ତୁମି ଫିରେ ନା, କରେ
କରୁଣ ଆଁଖିପାତ ।

ବିରାମହୀନ ବିଜୁଲିଘାତେ
ନିଦ୍ରାହାରା ପ୍ରାଣ
ବରଷା ଜଲ ଧାରାର ସାଥେ
ଗାହିତେ ଚାହେ ଗାନ ।

ହୃଦୟ ମୋର ଚୋଖେର ଜଲେ
ବାହିର ହଲ ତିମିରତଲେ;
ଆକାଶ ଖୋଁଜେ ବ୍ୟାକୁଲ ବଲେ
ବାଡ଼ାୟେ ଦୁଇ ହାତ ।
ଫିରେ ନା ତୁମି ଫିରେ ନା, କରେ
କରୁଣ ଆଁଖିପାତ ।

୩ ଆଷାଢ଼ ୧୩୧୭

ହେ ନାଥ, ଯଦି ମୋତେ ଜାଗ୍ରତ କଲ, ତେବେ ଫେରିଯାଅନାହିଁ, କରୁଣ ଦୃଷ୍ଟିପାତ କର । ନିବିଡ଼ ବନଶାଖା ଉପରେ ଆଷାଢ଼ ମେଘର ବୃଷ୍ଟି ଝରୁଛି, ବାଦଲଭରା ରାତି ଅଳସରେ ଶୋଇଯାଇଛି । ତୁମେ ଫେରନାହିଁ, କରୁଣ ଦୃଷ୍ଟି-ପାତ କର ।

ବିରାମହୀନ ବିଜୁଳିପାତରେ ମୋର ନିଦ୍ରାହରା ପ୍ରାଣ ବରଷାଧାରା ସହ ଗୀତ-ଗାଇବାକୁ ଚାହେଁ ।

ହୃଦୟ ମୋର ସାଶ୍ରୁ ନୟନରେ ତମିରତଳେ ବହିଗଛି, ବ୍ୟାକୁଳଭାବେ ଦି'ହାତ ବଢ଼ାଇ ଆକାଶ ଖୋଜୁଛି, ତୁମେ ଫେରିଯାଅନାହିଁ କରୁଣ ନୟନପାତ କର ।



## ୮୬

ଛିନ୍ନ କ'ରେ ଲଓ ହେ ମୋରେ
ଆର ବିଲମ୍ବ ନୟ ।
ଧୂଲାୟ ପାଛେ ଝରେ ପଡ଼ି
ଏଇ ଜାଗେ ମୋର ଭୟ ।
ଏ ଫୁଲ ତୋମାର ମାଲାର ମାଝେ
ଠାଁଇ ପାବେ କି ଜାନି ନା ଯେ,
ତବୁ ତୋମାର ଆଘାତଟି ତାର
ଭଗ୍ୟେ ଯେନ ରୟ ।
ଛିନ୍ନ କରେ, ଛିନ୍ନ କରେ,
ଆର ବିଲମ୍ବ ନୟ ।

କଖନ୍ ଯେ ଦିନ ଫୁରିୟେ ଯାବେ—
ଆସବେ ଆଁଧାର କ'ରେ,
କଖନ୍ ତୋମାର ପୂଜାର ବେଲା
କାଟବେ ଅଗୋଚରେ ।
ଯେଟୁକୁ ଏର ରଙ୍ଗ ଧରେଛେ,
ଗନ୍ଧେ ସୁଧାୟ ବୁକ ଭରେଛେ,
ତୋମାର ସେବାୟ ଲଓ ସେଟୁକୁ
ଥାକତେ ସୁସମୟ ।
ଛିନ୍ନ କରେ, ଛିନ୍ନ କରେ
ଆର ବିଲମ୍ବ ନୟ ।

୩ ଆଷାଢ଼ ୧୩୧୭

ଆଉ ବିଳମ୍ବ କରନା, ମୋତେ ଛିନ୍ନ କରିନିଅ, ଧୂଳିରେ କାଳେ ଝରିପଡ଼ିବ, ମୋର ଏଇ ଭୟ ହେଉଛି । ଏ ଫୁଲ ତୁମ ମାଳା ମଝିରେ ସ୍ଥାନ ପାଇବକିନା ମୁଁ ଯେ ଜାଣେନା, ତଥାପି ତୁମର ଆଘାତଟି ଯେପରି ତାର ଭାଗ୍ୟରେ ଘଟେ ।

କେବେ ଯେ ଦିନ ଶେଷ ହୋଇଯିବ, ଅନ୍ଧାର ହୋଇ ଆସିବ, ତୁମର ପୂଜା ବେଳା କେତେବେଳେ ଅଗୋଚରରେ କଟିଯିବ । ଯେତକ ଟିକିଏ ରଙ୍ଗ ଲାଗିଛି, ଗନ୍ଧସୁଧାରେ ହୃଦୟ ଭରିଛି, ସେଇ ଟିକକୁ ସମୟ ଥାଉଁଥାଉଁ ତୁମ ସେବାପାଇଁ ନିଅ । ବିଳମ୍ବ ନକର ମୋତେ ଛିନ୍ନ କର ।



## ୮୮

ଚାଇ ଗୋ ଆମି ତୋମାରେ ଚାଇ,
ତୋମାୟ ଆମି ଚାଇ—
ଏଇ କଥାଟି ସଦାଇ ମନେ
ବଲତେ ଯେନ ପାଇ ।
ଆର ଯା-କିଛୁ ବାସନାତେ
ଘୁରେ ବେଡ଼ାଇ ଦିନେ ରାତେ
ମିଥ୍ୟା ସେ-ସବ ମିଥ୍ୟା, ଓଗୋ,
ତୋମାୟ ଆମି ଚାଇ ।
ରାତ୍ରି ଯେମନ ଲୁକିୟେ ରାଖେ
ଆଲୋର ପ୍ରାର୍ଥନାଇ,
ତେମନି ଗଭୀର ମୋହେର ମାଝେ
ତୋମାୟ ଆମି ଚାଇ ।
ଶାନ୍ତିରେ ଝଡ଼ ଯଖନ ହାନେ
ଶାନ୍ତି ତବୁ ଚାୟ ସେ ପ୍ରାଣେ,
ତେମନି ତୋମାୟ ଆଘାତ କରି
ତବୁ ତୋମାୟ ଚାଇ

୩ ଆଷାଢ଼ ୧୩୧୭

ମୁଁ ତୁମକୁହିଁ ଚାହେଁ—ଏଇ କଥାଟି ଯେପରି ସବୁବେଳେ ମନ ଭିତରେ କହିପାରେଁ । ଦିନରାତି ଆଉ ଯେଉଁ ସବୁ ବାସନାରେ ଘୂରିବୁଲେଁ, ସେସବୁ ମିଥ୍ୟା, କେବଳ ତୁମକୁ ମୁଁ ଚାହେଁ ।

ରାତି ଯେପରି ଆଲୋକର ପ୍ରାର୍ଥନାକୁ ଲୁକ୍‌କାୟିତ କରି ରଖେ, ସେଇପରି ମୋରି ମଧ୍ୟରେ ତୁମକୁ ମୁଁ ଚାହେଁ । ଝଡ଼ ଯେପରି ଶାନ୍ତିକୁ ହତ୍ୟାକରେ, ତଥାପି ଶାନ୍ତିକୁହିଁ ପ୍ରାଣରେ କାମନା କରେ, ସେଇପରି ମୁଁ ତୁମକୁ ଆଘାତ କରିସୁଦ୍ଧା ତୁମକୁହିଁ ଚାହେଁ ।

# ୮୯

ଆମାର ଏ ପ୍ରେମ ନୟ ତୋ ଭୀରୁ,
ନୟ ତୋ ହୀନବଲ—
ଶୁଧୁ କି ଏ ବ୍ୟାକୁଲ ହୟେ
ଫେଲବେ ଅଶ୍ରୁଜଲ ।
ମନ୍ଦମଧୁର ସୁଖେ ଶୋଭାୟ
ପ୍ରେମକେ କେନ ଘୁମେ ଡୋବାୟ ।
ତୋମାର ସାଥେ ଜାଗତେ ସେ ଚାୟ
ଆନନ୍ଦେ ପାଗଲ ।
ନାଚ' ଯଖନ ଭୀଷଣ ସାଜେ
ତୀବ୍ର ତାଲେର ଆଘାତ ବାଜେ,
ପାଲାୟ ତ୍ରାସେ ପାଲାୟ ଲାଜେ
ସନ୍ଦେହ ବିହ୍ୱଲ ।
ସେଇ ପ୍ରଚଣ୍ଡ ମନୋହରେ
ପ୍ରେମ ଯେନ ମୋର ବରଣ କରେ,
କ୍ଷୁଦ୍ର ଆଶାର ସ୍ୱର୍ଗ ତାହାର
ଦିକ ସେ ରସାତଲ ।

୪ ଆଷାଢ଼ ୧୩୧୭

ମୋର ଏ ପ୍ରେମତ ଭୀରୁ, ଦୁର୍ବଳ ନୁହେଁ, କାହିଁକି କେବଳ ବ୍ୟାକୁଳ ଅଶ୍ରୁଜଳ ବୁହାଇବ ? ମନ୍ଦମଧୁର ସୁଖ ଶୋଭା ଏ ପ୍ରେମକୁ କାହିଁକି ନିଦ୍ରାମଗ୍ନ କରିଦିଏ ? ତୁମ ସଙ୍ଗ ସେ ଆନନ୍ଦରେ ପାଗଳ ହୋଇ ଜାଗିବାକୁ ଚାହେଁ ।

ଯେତେବେଳେ ଭୀଷଣ ସାଜରେ ତୀବ୍ର ତାଳର ଆଘାତରେ ତୁମେ ନାଚ, ସେତେବେଳେ ସେ ସନ୍ଦେହ ବିହ୍ୱଳ ହୋଇ ତ୍ରାସରେ, ଲଜ୍ୟାରେ ପଳାଏ । ସେଇ ପ୍ରଚଣ୍ଡ ମନୋହରକୁ ମୋର ପ୍ରେମ ଯେପରି ବରଣ କରୁ, ତାର କ୍ଷୁଦ୍ର ଆଶାର ସ୍ୱର୍ଗ ଯେପରି ରସାତଳକୁ ଠେଲିଦେଉ ।

ଆରେ ଆଘାତ ସଇବେ ଆମାର,
ସଇବେ ଆମାରେ—
ଆରେ କଠିନ ସୁରେ ଜୀବନ—
ତାରେ ଝଂକାରେ ।
ଯେ ରାଗ ଜାଗାଓ ଆମାର ପ୍ରାଣେ
ବାଜେ ନି ତା ଚରମ ତାନେ,
ନିଠୁର ମୂର୍ଚ୍ଛନାୟ ସେ ଗାନେ
ମୂର୍ତ୍ତି ସଞ୍ଚାରେ ।
ଲଗେ ନା ଗୋ କେବଲ ଯେନ
କୋମଲ କରୁଣା,
ମୃଦୁ ସୁରେର ଖେଲାୟ ଏ ପ୍ରାଣ
ବ୍ୟର୍ଥ କୋରେ ନା ।
ଜ୍ୱଲେ ଉଠୁକ ସକଲ ହୁତାଶ,
ଗର୍ଜି ଉଠୁକ ସକଲ ବାତାସ,
ଜାଗିୟେ ଦିୟେ ସକଲ ଆକାଶ
ପୂର୍ଣ୍ଣତା ବିସ୍ତାରେ ।

୪ ଆଷାଢ଼ ୧୩୧୭

ମୋର ଜୀବନ ତାର୍‌କୁ ଆଉରି କଠିନ ସୁରରେ ଝଂକୃତ କର, ଅଉରି ଆଘାତ ସହିବ ସେ । ମୋର ପ୍ରାଣରେ ଯେଉଁ ରାଗ ଜଗାଅ ତାହା ଚରମ ତାନରେ ବାଜନାହିଁ, ନିଷ୍ଠୁର ମୂର୍ଚ୍ଛନା ଦ୍ୱାରା ସେ ଗୀତକୁ ପ୍ରମୂର୍ତ୍ତି କର ।

କେବଳ କୋମଳ କରୁଣାରେ ମୃଦୁ ସୁରର ଖେଳାରେ ଏ ପ୍ରାଣକୁ ବ୍ୟର୍ଥ କରନା । ସକଳ ହୁତାଶ ଜଳିଉଠୁ, ସକଳ ବତାସ ଗର୍ଜିଉଠୁ, ସକଳ ଆକାଶକୁ ଜଗାଇ ପୂର୍ଣ୍ଣତା ବିସ୍ତାର କର ।

## ୯୧

ଏଇ କରେଛ ଭଲେ, ନିଠୁର
ଏଇ କରେଛ ଭଲେ ।
ଏମନି କରେ ହୃଦୟେ ମୋର
ତୀବ୍ର ଦହନ ଜ୍ୱାଲେ ।
ଆମାର ଏ ଧୂପ ନା ପୋଡ଼ାଲେ
ଗନ୍ଧ କିଛୁଇ ନାହି ଢାଲେ,
ଆମାର ଏ ଦୀପ ନା ଜ୍ୱାଲଲେ
ଦେୟ ନା କିଛୁଇ ଆଲେ ।

ଯଖନ ଥାକେ ଅଚେତନେ
ଏ ଚିତ୍ତ ଆମାର
ଆଘାତ ସେ ଯେ ପରଶ ତବ
ସେଇ ତୋ ପୁରସ୍କାର ।
ଅନ୍ଧକାରେ ମୋହେ ଲଜେ
ଚୋଖେ ତୋମାୟ ଦେଖିନା ଯେ,
ବଜ୍ରେ ତୋଲେ ଆଗୁନ କ'ରେ
ଆମାର ଯତ କାଲେ ।

୪ ଆଷାଢ଼ ୧୩୧୭

ହେ ନିଷ୍ଠୁର ଏହାହିଁ ଭଲ କଲ । ଏମିତି କରି ମୋର ହୃଦୟରେ ତୀବ୍ର ଦହନ ଜାଳିଦିଅ । ଧୂପ ନ ପୋଡ଼ିଲେ କିଛି ଗନ୍ଧ ଢାଳେନାହିଁ, ଦୀପ ନ ଜାଳିଲେ କିଛି ଆଲୋକ ଦିଏନାହିଁ ।

ମୋର ଏ ଅଚେତନ ଚିତ୍ତରେ ତୁମର ସ୍ପର୍ଶାଘାତ—ମୋର ପୁରସ୍କାର । ଅନ୍ଧାରର, ମୋହ ଓ ଲାଜରେ ମୁଁ ତୁମକୁ ଦୃଷ୍ଟିଗତ କରିନି । ମୋର କାଳିମାକୁ ବଜ୍ରାଗ୍ନିରେ ଦହନ କର ।

## ୯୨

ଦେବତା ଜେନେ ଦୂରେ ରଇ ଦାଁଡ଼ାୟେ,
ଆପନ ଜେନେ ଆଦର କରି ନେ ।
ପିତା ବଲେ ପ୍ରଣାମ କରି ପାୟେ,
ବନ୍ଧୁ ବଲେ ଦୁ ହାତ ଧରି ନେ
ଆପନି ତୁମି ଅତି ସହଜ ପ୍ରେମେ
ଆମାର ହୟେ ଏଲେ ଯେଥାୟ ନେମେ
ସେଥାୟ ସୁଖେ ବୁକେର ମଧ୍ୟେ ଧ'ରେ
ସଙ୍ଗୀ ବଲେ ତୋମାୟ ବରି ନେ ।
ଭଇ ତୁମି ଯେ ଭଇୟେର ମାଝେ ପ୍ରଭୁ,
ତାଦେର ପାନେ ତାକାଇ ନା ଯେ ତବୁ,
ଭଇୟେର ସାଥେ ଭଗ କରେ ମୋର ଧନ
ତୋମାର ମୁଠା କେନ ଭରି ନେ ।
ଛୁଟେ ଏସେ ସବାର ସୁଖେ ଦୁଖେ
ଦାଁଡ଼ାଇ ନେ ତୋ ତୋମାରଇ ସମ୍ମୁଖେ
ସଁପିୟେ ପ୍ରାଣ କ୍ଳାନ୍ତିବିହୀନ କାଜେ
ପ୍ରାଣ ସାଗରେ ଝାଁପିୟେ ପଡ଼ି ନେ ।

୫ ଆଷାଢ଼ ୧୩୧୭

ଦେବତା ଜାଣି ଦୂରରେ ଠିଆହୋଇ ରହେଁ, ନିଜର ଜାଣି ଆଦର କରେ-ନାହିଁ । ପିତାବୋଲି ପ୍ରଣିପାତ କରେଁ, ବନ୍ଧୁ ମନେକରି ଦୁହାତ ଧରିନାହିଁ ।

ତୁମେ ନିଜେ ଅତି ସହଜ ପ୍ରେମରେ ମୋର ହୋଇ ଓହ୍ଲାଇ ଆସିଲ, ମାତ୍ର ସୁଖରେ ତୁମକୁ ଛାତିରେ ଜାକି ସଙ୍ଗୀ ବୋଲି ବରଣ କରିନାହିଁ ।

ପ୍ରଭୁ, ଭାଇମାନଙ୍କ ମଧ୍ୟରେ ତୁମେ ଭାଇ, ତଥାପି ସେମାନଙ୍କ ଆଡକୁ ଅନାଏନାହିଁ, ଭାଇ ସହ ମୋର ଧନ ଭାଗକରି ତୁମର ମୁଠାକୁ କାହିଁକିଯେ ଭରେ ନାହିଁ ।

ସମସ୍ତଙ୍କ ସୁଖ ଦୁଃଖରେ ତୁମ ପାଖକୁ ଧାଇଁଆସି ଠିଆ ହୁଏନାହିଁ, କ୍ଳାନ୍ତି ବିହୀନ କର୍ମରେ ପ୍ରାଣ ସମର୍ପଣ କରି ପ୍ରାଣ-ସାଗରକୁ ଡେଇଁପଡେନାହିଁ ।

## ୯୩

ତୁମି ଯେ କାଜ କରଛ, ଆମାୟ
            ସେଇ କାଜେ କି ଲଗାବେ ନା ।
କାଜେର ଦିନେ ଆମାୟ ତୁମି
            ଆପନ ହାତେ ଜାଗାବେ ନା ?
                        ଭଲେମନ୍ଦ ଓଠାପଡ଼ାୟ
                        ବିଶ୍ୱଶାଲର ଭଙ୍ଗାଗଡ଼ାୟ
                        ତୋମାର ପାଶେ ଦାଁଡ଼ିୟେ ଯେନ ।
                                    ତୋମାର ସାଥେ ହୟେ ଗୋ ଚେନା ।
ଭେବେଛିଲେମ ବିଜନ ଛାୟାୟ
            ନାଇ ଯେଖାନେ ଆନାଗୋନା
ସନ୍ଧ୍ୟାବେଲାୟ ତୋମାୟ ଆମାୟ
            ସେଥାୟ ହବେ ଜାନାଶୋନା ।
                        ଅନ୍ଧକାରେ ଏକା ଏକା
                        ସେ ଦେଖା ଯେ ସ୍ୱପ୍ନ ଦେଖା,
                        ଡାକୋ ତୋମାର ହାଟେର ମାଝେ
                                    ଚଲଛେ ଯେଥାୟ ବେଚାକେନା ।

୬ ଆଷାଢ଼ ୧୩୧୭

ତୁମେ ଯେଉଁ କାମ କରୁଛ, ମୋତେ ସେ କାମରେ ଲଗାଇବନାହିଁ ? କାମ-ବେଳେ ତୁମେ ମୋତେ ନିଜ ହାତରେ ଜାଗ୍ରତ କରିବ ନାହିଁ ? ବିଶ୍ୱର ଭଲମନ୍ଦ ଉଠାପଡ଼ା ଭଙ୍ଗା-ଗଢ଼ା ମଧ୍ୟରେ ତୁମ ପାଖରେ ଠିଆହୋଇ ତୁମକୁ ଜାଣିବାକୁ ମୁଁ ଚାହେଁ ।

ଭାବିଥିଲି ବିଜନ ଛାୟାରେ, ଯେଉଁଠି କାହାରି ଯାତାୟାତ ନାହିଁ, ସେଠାରେ ସନ୍ଧ୍ୟାବେଳେ ତୁମର ମୋର ଚିହ୍ନାପରିଚୟ ହେବ । ଅନ୍ଧକାରରେ ଏକାଏକା ସେ ଦେଖାହେବ ସ୍ୱପ୍ନ ଦେଖିବା ପରି । କିନ୍ତୁ ତୁମେ ହାଟମଝିକୁ ଡାକ, ଯେଉଁଠି ବିକାକିଣା ଲାଗିଛି !

## ୯୪

ବିଶ୍ୱସାଥେ ଯୋଗେ ଯେଥାୟ ବିହାର'
ସେଇଖାନେ ଯୋଗ ତୋମାର ସାଥେ ଆମାରେ ।
ନୟକୋ ବନେ ନୟ ବିଜନେ,
ନୟକୋ ଆମାର ଆପନ ମନେ,
ସବାର ଯେଥାୟ ଆପନ ତୁମି, ହେ ପ୍ରିୟ,
ସେଥାୟ ଆପନ ଆମାରେ ।

ସବାର ପାନେ ଯେଥାୟ ବାହୁ ପସାର'
ସେଇଖାନେତେଇ ପ୍ରେମ ଜାଗିବେ ଆମାରେ ।
ଗୋପନେ ପ୍ରେମ ରୟ ନା ଘରେ,
ଆଲୋର ମତୋ ଛଡ଼ିୟେ ପଡ଼େ—
ସବାର ତୁମି ଆନନ୍ଦ ଧନ, ହେ ପ୍ରିୟ,
ଆନନ୍ଦ ସେଇ ଆମାରେ ।

୭ ଆଷାଢ଼ ୧୩୧୭

ବିଶ୍ୱ ସହ ସଂଯୁକ୍ତହୋଇ ଯେଉଁଠି ତୁମେ ବିହାର କରୁଛ, ସେଇଠି ତୁମସହ ମୋର ସଂଯୋଗ । ବନରେ କି ନିର୍ଜନରେ କି ନିଜ ମନରେ ନୁହଁ, ହେ ପ୍ରିୟ, ଯେଉଁଠି ତୁମେ ସବୁର ପ୍ରିୟ, ସେଇଠି ତୁମେ ମୋର ମଧ୍ୟ ପ୍ରିୟ ।

ଯେଉଁଠି ସବୁର ଉଦ୍ଦେଶ୍ୟରେ ତୁମେ ବାହୁ ପ୍ରସାରିତ କର, ସେଇଠାରେହିଁ ମୋର ପ୍ରେମ ଜାଗ୍ରତ ହେବ । ପ୍ରେମ ଗୋପନରେ ଘରେ ନିରୁଦ୍ଧ ଆଲୋକପରି ବିଚ୍ଛୁଡ଼ିପଡ଼େ; ତୁମେ ସବୁର ଆନନ୍ଦଧନ, ହେ ପ୍ରିୟ, ତାହାହିଁ ମୋର ଆନନ୍ଦ ।

## ୯୫

ଡାକୋ ଡାକୋ ଡାକୋ ଆମାରେ
ତୋମାର ସ୍ନିଗ୍ଧ ଶୀତଲ ଗଭୀର
ପବିତ୍ର ଆଁଧାରେ ।
ତୁଚ୍ଛ ଦିନେର କ୍ଲାନ୍ତି ଗ୍ଲାନି
ଦିତେଛେ ଜୀବନ ଧୂଲାତେ ଟାନି
ସାରାକ୍ଷଣେର ବାକ୍ୟମନେର
ସହସ୍ର ବିକାରେ ।

ମୁକ୍ତ କରୋ ହେ ମୁକ୍ତ କରୋ ଆମାରେ
ତୋମାର ନବିଡ଼ ନୀରବ ଉଦାର
ଅନନ୍ତ ଆଁଧାରେ ।
ନୀରବ ରାତ୍ରେ ହାରାଇୟା ବାକ୍
ବାହିର ଆମାର ବାହିରେ ମିଶାକ
ଦେଖା ଦିକ ମମ ଅନ୍ତରତମ
ଅଖଣ୍ଡ ଆକାରେ ।

୭ ଆଷାଢ଼ ୧୩୧୭

ତୁମର ସ୍ନିଗ୍ଧ, ଶୀତଳ, ଗଭୀର, ପବିତ୍ର ଅନ୍ଧକାର ଭିତରକୁ ମୋତେ ଡାକ । ତୁଚ୍ଛ ଦିନର କ୍ଳାନ୍ତି ଓ ଗ୍ଳାନି ସାରାକ୍ଷଣର ବାକ୍ୟ ଓ ମନର ସହସ୍ର ବିକାରରେ ଜୀବନକୁ ଧୂଳିଗ୍ରସ୍ତ କରାଉଛି ।

ତୁମର ନିବିଡ଼, ନୀରବ, ଅନନ୍ତ ଅନ୍ଧାରରେ ମୋତେ ମୁକ୍ତ କର । ନୀରବ ରାତିରେ ବାକ୍‌ହରା ହୋଇ ମୋର ବାହାର ମିଶୁ ବାହାରରେ, ଅଖଣ୍ଡ ଆକାରରେ ମୋର ଅନ୍ତରତମ ଦେଖାଦେଉ ।

# ୯୭

ଯେଥାୟ ତୋମାର ଲୁଟ ହତେଛେ ଭୁବନେ
ସେଇଖାନେ ମୋର ଚିତ୍ତ ଯାବେ କେମନେ ।
ସୋନାର ଘଟେ ସୂର୍ଯ ତାରା
ନିଚ୍ଛେ ତୁଲେ ଆଲୋର ଧାରା,
ଅନନ୍ତ ପ୍ରାଣ ଛାଡ଼ିୟେ ପଡ଼େ ଗଗନେ ।
ସେଇଖାନେ ମୋର ଚିତ୍ତ ଯାବେ କେମନେ ।

ଯେଥାୟ ତୁମି ବସ’ ଦାନେର ଆସନେ
ଚିତ୍ତ ଆମାର ସେଥାୟ ଯାବେ କେମନେ ।
ନିତ୍ୟ ନୂତନ ରସେ ଢେଲେ
ଆପନାକେ ଯେ ଦିଚ୍ଛ ମେଲେ,
ସେଥା କି ଡାକ ପଡ଼ବେ ନା ଗୋ ଜୀବନେ ।
ସେଇଖାନେ ମୋର ଚିତ୍ତ ଯାବେ କେମନେ ।

୮ ଆଷାଢ଼ ୧୩୧୮

ବିଶ୍ୱଭୁବନରେ ଯେଉଁଠି ତୁମର ଲୁଟ ହେଉଛି ସେଠାକୁ ମୋର ଚିତ୍ତ କିପରି ଯିବ ? ଆକାଶରେ ଅନନ୍ତପ୍ରାଣ ବିଚ୍ଛୁରିତ । ସୁନାର ଘଟରେ ସୂର୍ଯ୍ୟତାରା, ଆଲୋକର ଧାରା ଭରି ନେଉଛନ୍ତି, ସେଠାକୁ ମୋର ଚିତ୍ତ କିପରି ଯିବ ?

ତୁମେ ଯେଉଁଠି ଦାନର ଆସନରେ ବସିଛ ସେଠାକୁ ମୋର ଚିତ୍ତ ଯିବ କିପରି । ନିତ୍ୟ ନୂତନ ରସ ଢାଳି ଆପଣାକୁ ଯେ ମେଲି ଦେଉଛ ସେଠାକୁ ଜୀବନରେ କଣ ମୋତେ ଡ଼ାକରା ଆସିବନାଇଁ, ସେଠାକୁ କିପରି ମୋର ଚିତ୍ତଯିବ ?

## ୯୭

ଫୁଲେର ମତନ ଆପନି ଫୁଟାଓ ଗାନ,
ହେ ଆମାର ନାଥ, ଏଇ ତୋ ତୋମାର ଦାନ
ଓଗୋ, ସେ ଫୁଲ ଦେଖିୟା ଆନନ୍ଦେ ଆମି ଭସି
ଆମାର ବଲିୟା ଉପହାର ଦିତେ ଆସି,
ତୁମି ନିଜ ହାତେ ତାରେ ତୁଲେ ଲଓ ସ୍ନେହେ ହାସି—
ଦୟା କରେ ପ୍ରଭୁ ରଖ' ମୋର ଅଭିମାନ ।

ତାର ପରେ ଯଦି ପୂଜାର ବେଲାର ଶେଷେ
ଏ ଗାନ ଝରିୟା ଧରାର ଧୂଲାୟ ମେଶେ
ତବେ କ୍ଷତି କିଛୁ ନାଇ—ତବ କରତଲପୁଟେ
ଅଜସ୍ର ଧନ କତ ଲୁଟେ କତ ଟୁଟେ,
ତାରା ଆମାର ଜୀବନେ କ୍ଷଣକାଲତରେ ଫୁଟେ
ଚିରକାଲତରେ ସାର୍ଥକ କରେ ପ୍ରାଣ ।

୯ ଆଷାଢ଼ ୧୩୧୭

ଫୁଲପରି ତୁମେ ଆପେ ଗୀତ ଫୁଟାଅ । ହେ ନାଥ, ଏହା ତୁମରହିଁ ଦାନ । ସେ ଫୁଲ ଦେଖି ଆନନ୍ଦରେ ଭାସି ମୋର ବୋଲି କହି ଉପହାର ଦେବାକୁ ଗଲେ ତୁମେ ସସ୍ନେହ ହସି ନିଜ ହାତରେ ତାକୁ ତୋଳିନିଅ । ପ୍ରଭୁ, ତୁମେ ମୋର ଅଭିମାନକୁ ଦୟାକରି ରକ୍ଷାକର ।

ଏହାପରେ, ଯଦି ପୂଜାଲଗ୍ନ ଶେଷରେ ଏ ଗୀତ ଝରିପଡ଼ି ଧରାର ଧୂଳିରେ ମିଶେ ତାହେଲେ କିଛି କ୍ଷତିନାହିଁ—ତୁମ କରତଳପୁଟରେ ଅଜସ୍ର ଧନ, କେତେ ଲୁଟେ, କେତେ ତୁଟେ, ସେସବୁ ମୋର ଜୀବନରେ କ୍ଷଣକାଳପାଇଁ ଫୁଟି ଚିରକାଳ ପାଇଁ ପ୍ରାଣକୁ ସାର୍ଥକ କରେ ।

## ୪୮

ମୁଖ ଫିରୟେ ରବ ତୋମାର ପାନେ
ଏଇ ଇଚ୍ଛାଟି ସଫଲ କରେ ପ୍ରାଣେ ।
କେବଲ ଥାକା, କେବଲ ଚେୟେ ଥାକା,
କେବଲ ଆମାର ମନଟି ତୁଲେ ରଖା,
ସକଲ ବ୍ୟାଥା ସକଲ ଆକାଙ୍କ୍ଷାୟ
ସକଲ ଦିନେର କାଜେରଇ ମାଝଖାନେ

ନାନା ଇଚ୍ଛା ଧାୟ ନାନା ଦିକ-ପାନେ,
ଏକଟି ଇଚ୍ଛା ସଫଲ କରେ ପ୍ରାଣେ ।
ସେଇ ଇଚ୍ଛାଟି ରାତେର ପରେ ରାତେ
ଜାଗେ ଯେନ ଏକେର ବେଦନାତେ,
ଦିନେର ପରେ ଦିନକେ ଯେନ ଗାଁଥେ
ଏକେର ସୂତ୍ରେ ଏକ ଆନନ୍ଦଗାନେ ।

୧୦ ଆଷାଢ଼ ୧୩୧୭

ତୁମ ଦିଗରେ ମୁହଁ କରି ରହିବି—ଏଇ ଇଚ୍ଛାଟିକୁ ମୋର ସଫଳକର । କେବଳ ଚାହିଁ ରହିବି, କେବଳ ମୋର ମନଟି ତୋଳି ଧରିବି, ସକଳ ବ୍ୟଥା, ସକଳ ଅକାଂକ୍ଷା, ସାରାଦିନର କାମର ମଝିରେ ଖାଲି ଚାହିଁ ରହିବି ।

ନାନା ଦିଗରେ ନାନା ଇଚ୍ଛା ପ୍ରଧାବିତ; ତନ୍ମଧ୍ୟରୁ ପ୍ରାଣର ଗୋଟିଏ ଇଚ୍ଛା ପୂର୍ଣ୍ଣକର । ସେଇ ଇଚ୍ଛାଟି ଯେପରି ରାତିପରେ ରାତି ଏକମାତ୍ର ବେଦନାରେ ଜାଗ୍ରତ ରଖେ, ଦିନପରେ ଦିନ ଯେପରି ଏକଇ ସୂତ୍ରରେ ଏକଇ ଆନନ୍ଦରେ ଗ୍ରଥିତକରେ ।

## ୯୯

ଆବାର ଏସେଛେ ଆଷାଢ଼ ଆକାଶ ଛେୟେ,
ଆସେ ବୃଷ୍ଟିର ସୁବାସ ବାତାସ ବେୟେ ।
ଏଇ ପୁରାତନ ହୃଦୟ ଆମାର ଆଜି
ପୁଲକେ ଦୁଲିୟା ଉଠିଛେ ଆବାର ବାଜି
ନୂତନ ମେଘେର ଘନିମାର ପାନେ ଚେୟେ ।
ଆବାର ଏସେଛେ ଆଷାଢ଼ ଆକାଶ ଛେୟେ ।

ରହିୟା ରହିୟା ବିପୁଲ ମାଠେର 'ପରେ
ନବତୃଣ ଦଲେ ବାଦଲେର ଛାୟା ପଡ଼େ ।
'ଏସେଛେ ଏସେଛେ' ଏଇ କଥା ବଲେ ପ୍ରାଣ,
'ଏସେଛେ ଏସେଛେ' ଉଠିତେଛେ ଏଇ ଗାନ—
ନୟନେ ଏସେଛେ ହୃଦୟେ ଏସେଛେ ଧେୟେ ।
ଆବାର ଆଷାଢ଼ ଏସେଛେ ଆକାଶ ଛେୟେ ।

୧୦ ଆଷାଢ଼ ୧୩୧୭

ଆଷାଢ଼ ପୁନଶ୍ଚ ଆସିଛୁ ଆକାଶ ଢାଙ୍କି, ବତାସରେ ବୃଷ୍ଟିର ସୁବାସ । ମୋର ଏଇ ପୁରାତନ ହୃଦୟ ନୂତନ ମେଘର ଘନଘଟା ଦେଖି ପୁନଶ୍ଚ ଆଜ ପୁଲକିତ, ଆନ୍ଦୋଳିତ ଓ ନିନାଦିତ ।

ବିପୁଳ ପଡ଼ିଆର ନବତୃଣଦଳ ଉପରେ ରହି ରହି ମେଘର ଛାଇ ପଡୁଛି । 'ଆସିଛୁ ଆସିଛୁ' ବୋଲି ପ୍ରାଣ କହୁଛି, 'ଆସିଛୁ ଆସିଛୁ' ବୋଲି ଗାନ ଉଠୁଛି । ହୃଦୟରେ, ନୟନରେ ଆଜ ଧାଇଁ ଆସିଛୁ, ଆସିଛୁ ଆକାଶ ଢାଙ୍କି ଆଷାଢ଼ ।

## ୧୦୦

ଆଜ ବରଷାର ରୂପ ହେରି ମାନବେର ମାଝେ,
ଚଲେଛେ ଗରଜି, ଚଲେଛେ ନିବିଡ଼ ସାଜେ ।
ହୃଦୟେ ତାହାର ନାଚିୟା ଉଠିଛେ ଭୀମା,
ଧାଇତେ ଧାଇତେ ଲୋପ କ'ରେ ଚଲେ ସୀମା
କୋନ୍ ତାଡ଼ନାୟ ମେଘେର ସହିତ ମେଘେ
ବକ୍ଷେ ବକ୍ଷେ ମିଲିୟା ବଜ୍ର ବାଜେ ।
ବରଷାର ରୂପ ହେରି ମାନବେର ମାଝେ ।

ପୁଞ୍ଜେ ପୁଞ୍ଜେ ଦୂର ସୁଦୂରେର ପାନେ
ଦଲେ ଦଲେ ଚଲେ, କେନ ଚଲେ ନାହି ଜାନେ ।
ଜାନେ ନା କିଛୁଇ କୋନ୍ ମହାଦ୍ରି ତଲେ
ଗଭୀର ଶ୍ରାବଣେ ଗଲିୟା ପଡ଼ିବେ ଜଲେ,
ନାହି ଜାନେ ତାର ଘନଘୋର ସମାରୋହେ
କୋନ୍ ସେ ଭୀଷଣ ଜୀବନମରଣ ରାଜେ ।
ବରଷାର ରୂପ ହେରି ମାନବେର ମାଝେ ।

ଈଶାନ କୋଣେତେ ଓଇ-ଯେ ଝଡ଼େର ବାଣୀ
ଗୁରୁ ଗୁରୁ ରବେ କୀ କରିଛେ କାନାକାନି ।
ଦିଗନ୍ତରାଲେ କୋନ୍ ଭବିତବ୍ୟତା
ସ୍ତବ୍ଧ ତିମିରେ ବହେ ଭାଷାହୀନ ବ୍ୟଥା,
କାଲୋ କଲ୍ପନା ନିବିଡ଼ ଛାୟାର ତଲେ
ଘନାୟେ ଉଠିଛେ କୋନ୍ ଆସନ୍ନ କାଜେ ।
ବରଷାର ରୂପ ହେରି ମାନବେର ମାଝେ ।

୧୧ ଆଷାଢ଼ ୧୩୧୭

ଆଜି ମାନବର ମହିରେ ବର୍ଷାକୁ ଦେଖୁଛୁ, ଗର୍ଜନ କରି ନିବିଡ଼ ସାଜରେ ଚାଲିଛି ବର୍ଷା । ହୃଦୟରେ ଭାର ଭ୍ରମ ନାଚି ଉଠିଛି, ସବୁ ସୀମା ଲୋକ କରି ଧାଇଁଛି ମେଘ । କେଉଁ ତାଡ଼ନାରେ ମେଘ ସହ ମେଘ ଧାଇଁ ଧାଇଁ ବକ୍ଷରେ ବକ୍ଷ ମିଳି ବଜ୍ର ବାଜି ଉଠୁଛି ।

ଦୂର ସୁଦୂର ଦିଗରେ ଦଳଦଳ ପୁଞ୍ଜପୁଞ୍ଜ ମେଘ କାହିଁକି ଯେ ଚାଲିଛି ଜାଣେନା । ଜାଣେନା କେଉଁ ମହାଦ୍ରି ତଳେ ଗମ୍ଭୀର ଶ୍ରାବଣରେ ଜଳ ହୋଇ ଗଳି ପଡ଼ିବ ଏ ମେଘ । ଜାଣେନା ଏ ମେଘର ଘନ ଘୋର ସମାରୋହରେ କେଉଁ ଭୀଷଣ ଜୀବନ ବା ମରଣ ବିରାଜିତ ।

ଗୁରୁଗୁରୁ ରବରେ ଈଶାନ କୋଣରେ ଏଇ ଯେ ଝଙ୍କାର ବାଣୀ କିଏ ଯେ ପରସ୍ପରକୁ କହୁଛି । ଦିଗାନ୍ତରାଳରେ କେଉଁ ଭବିତବ୍ୟତା ରୁଦ୍ଧ ଛମିରରେ ଭାଷାହୀନ ବ୍ୟଥା ବହନ କରୁଛି । କେଉଁ ଆସନ୍ନ କାର୍ଯ୍ୟାର୍ଥେ ଏଇ କାଳିଆ-କଳ୍ପନା ନିବିଡ଼ ଗୁମ୍ଫାତଳେ ଘେନେଇ ଆସିଛି —ସେଇ ବରଷାର ରୂପ ମାନବ ମହିରେ ଦେଖୁଛି ମୁଁ ।

ସଂପ୍ରତି ଭାରତ ସରକାରଙ୍କର ନାରୀ ମର୍ଯ୍ୟାଦା ସୁରକ୍ଷା ସମ୍ବନ୍ଧିତ ଏକ ସାମାଜିକ ନୀତି ପ୍ରଣୟନ କରିଛନ୍ତି । ଏହା ଆପାତତଃ କଳା ଓ ସାହିତ୍ୟ କ୍ଷେତ୍ରରେ ପ୍ରୟୋଗ ନିମନ୍ତେ ଉଦ୍ଦିଷ୍ଟ । ସରକାରୀ ନିୟନ୍ତ୍ରିତ ଆକାଶବାଣୀ ଓ ଦୂରଦର୍ଶନ କ୍ଷେତ୍ରରେ ଏହା ଲାଗୁ କରିବାପାଇଁ ନିର୍ଦ୍ଦେଶ ଦିଆଗଲାଣି ।



## ୧୦୧

ହେ ମୋର ଦେବତା, ଭରିୟା ଏ ଦେହ ପ୍ରାଣ
କୀ ଅମୃତ ତୁମି ଚାହ କରିବାରେ ପାନ ।
ଆମାର ନୟନେ ତୋମାର ବିଶ୍ୱ ଛବି
ଦେଖିୟା ଲଇତେ ସାଧ ଯାୟ ତବ କବି—
ଆମାର ମୁଗ୍ଧ ଶ୍ରବଣେ ନୀରବ ରହି
ଶୁନିୟା ଲଇତେ ଚାହ ଆପନାର ଗାନ ।
ହେ ମୋର ଦେବତା, ଭରିୟା ଏ ଦେହ ପ୍ରାଣ
କୀ ଅମୃତ ତୁମି ଚାହ କରିବାରେ ପାନ ।

ଆମାର ଚିତ୍ତେ ତୋମାର ସୃଷ୍ଟିଖାନି
ରଚିୟା ତୁଲିଛେ ବିଚିତ୍ର ଏକ ବାଣୀ ।
ତାରି ସାଥେ, ପ୍ରଭୁ, ମିଲିୟା ତୋମାର ପ୍ରୀତି
ଜାଗାୟେ ତୁଲିଛେ ଆମାର ସକଲ ଗୀତି,
ଆପନାରେ ତୁମି ଦେଖିଛ ମଧୁର ରସେ
ଆମାର ମାଝାରେ ନିଜେରେ କରିୟା ଦାନ ।
ହେ ମୋର ଦେବତା, ଭରିୟା ଏ ଦେହ ପ୍ରାଣ
କୀ ଅମୃତ ତୁମି ଚାହ କରିବାରେ ପାନ ।

୧୩ ଆଷାଢ଼ ୧୩୧୭

ହେ ମୋର ଦେବତା, ଏ ଦେହପ୍ରାଣ ପରିପୂର୍ଣ୍ଣ କରି କେଉଁ ଅମୃତ ତୁମେ ପାନ କରିବାକୁ ଚାହଁ । ହେ କବି, ମୋର ନୟନରେ ତୁମର ବିଶ୍ୱର ଛବି ଦେଖିବାର ବାସନା ତୁମର, ମୋର ମୁଗ୍ଧ ଶ୍ରବଣରେ ନୀରବରେ ଅବସ୍ଥାନ କରି ତୁମେ ତୁମର ନିଜର ଗୀତ ଶୁଣିବାକୁ ଚାହଁ ।

ମୋର ଚିତ୍ତରେ ତୁମର ସୃଷ୍ଟି ଏକ ବିଚିତ୍ର ବାଣୀ ରଚନା କରିଛି । ତା ସହ, ହେ ପ୍ରଭୁ, ତୁମର ପ୍ରୀତି ମିଳିତ ହୋଇ ମୋର ସକଳ ଗୀତକୁ ଜାଗ୍ରତ କରିଛି । ମୋର ମଧ୍ୟରେ ନିଜକୁ ଦାନକରି, ଆପଣାକୁ ତୁମେ ମଧୁରସରେ ଦେଖିଛ । ହେ ଦେବତା, ଏ ଦେହ ପ୍ରାଣପୂର୍ଣ୍ଣକରି କେଉଁ ଅମୃତ ତୁମେ ପାନ କରିବାକୁ ଚାହଁ ।

## ୧୦୨

ଏଇ ମୋର ସାଧ ଯେନ ଏ ଜୀବନ ମାଝେ
ତବ ଆନନ୍ଦ ମହା ସଙ୍ଗୀତେ ବାଜେ ।
ତୋମାର ଆକାଶ, ଉଦାର ଆଲୋକଧାରା,
ଦ୍ୱାର ଛୋଟୋ ଦେଖେ ଫେରେ ନା ଯେନ ଗୋ ତାରା—
ଛୟ ଋତୁ ଯେନ ସହଜ ନୃତ୍ୟେ ଆସେ
ଅନ୍ତରେ ମୋର ନିତ୍ୟ ନୂତନ ସାଜେ ।

ତବ ଆନନ୍ଦ ଆମାର ଅଙ୍ଗେ ମନେ
ବଧା ଯେନ ନାହି ପାୟ କୋନୋ ଆବରଣେ ।
ତବ ଆନନ୍ଦ ପରମ ଦୁଃଖେ ମମ
ଜ୍ୱଲେ ଉଠେ ଯେନ ପୂଣ୍ୟ-ଆଲୋକ-ମମ,
ତବ ଆନନ୍ଦ ଦୀନତା ଚୂର୍ଣ୍ଣ କରି
ଫୁଟେ ଉଠେ ଫେଟେ ଆମାର ସକଲ କାଜେ ।

୧୩ ଆଷାଢ଼ ୧୩୧୭

ଏହାହିଁ ମୋର ବାସନା-ଯେପରି ମୋର ଜୀବନ ମଝିରେ ତୁମ ଆନନ୍ଦର ମହାସଙ୍ଗୀତ ବାଜୁ, ତୁମ ଆକାଶର ଉଦାର ଆଲୋକଧାରା, ମୋର ଦୁଆର ଛୋଟ ଦେଖି ନ ଫେରୁ, ମୋର ଅନ୍ତରରେ ଛଅଋତୁ ନିତ୍ୟନୂତନସାଜରେ ସହଜ ନୃତ୍ୟରେ ଆସୁ ।

କୌଣସି ଆବରଣ ହେତୁ ତୁମର ଆନନ୍ଦ ଯେପରି ମୋର ଦେହ ମନରେ ବାଧାପ୍ରାପ୍ତ ନହୁଏ । ମୋର ପରମ ଦୁଃଖରେ ତୁମର ଆନନ୍ଦ ଯେପରି ପୁଣ୍ୟାଲୋକ-ସମ ଜଳିଉଠେ । ମୋର ଦୈନ୍ୟ ଚୂର୍ଣ୍ଣକରି ସମସ୍ତ କର୍ମରେ ତୁମର ଆନନ୍ଦ ଯେପରି ଫୁଟିଉଠେ ।

## ୧୦୩

ଏକଲା ଆମି ବାହିର ହଲେମ
 ତୋମାର ଅଭିସାରେ,
ସାଥେ ସାଥେ କେ ଚଲେ ମୋର
 ନୀରବ ଅନ୍ଧକାରେ ।
ଛାଡ଼ାତେ ଚାଇ ଅନେକ କରେ,
ଘୁରେ ଚଲି, ଯାଇ ଯେ ସରେ,
ମନେ କରି ଆପଦ ଗେଛେ—
 ଆବାର ଦେଖି ତାରେ ।
ଧରଣୀ ସେ କାଁପିୟେ ଚଲେ,
 ବିଷମ ଚଞ୍ଚଲତା ।
ସକଲ କଥାର ମଧ୍ୟେ ସେ ଚାୟ
 କଇତେ ଆପନ କଥା ।
ସେ ଯେ ଆମାର ଆମି, ପ୍ରଭୁ,
ଲଜ୍ଜା ତାହାର ନାଇ ଯେ କଭୁ—
ତାରେ ନିୟେ କୋନ୍ ଲଜେ ବା
 ଯାବ ତୋମାର ଦ୍ୱାରେ ।

୧୪ ଆଷାଢ଼ ୧୩୧୭

ତୁମ ଅଭିସାରରେ ମୁଁ ଏକାକୀ ବାହାରିଲି । ମୋ ସାଥୀରେ ଏ ନୀରବ ଅନ୍ଧକାରେ କିଏ ଚାଲେ ? ତାକୁ ପରିତ୍ୟାଗ କରିବାକୁ, ମୁଁ ଘୁରିଚାଲେ ସେ ଘୁଞ୍ଚିଯାଏ । ଭାବେ ବିପଦଗଲା । ପୁଣି ଦେଖେ ତାକୁ !

ଧରଣୀ କମ୍ପାଇ ସେ ବିଷମ ଚଞ୍ଚଳତାରେ ଚାଲେ । ସବୁକଥା ମଧ୍ୟରେ ନିଜ-କଥା କହିବାକୁ ସେ ଚାହେଁ । ସେ ଯେ ମୋର-ମୁଁ କାର ! ତାର ଲଜ୍ଜା ନାହିଁ । ତାକୁ ନେଇ କେଉଁ ଲାଜରେ ବା ତୁମ ଦ୍ୱାରକୁ ଯିବ ?

# ୧୦୪

ଆମି ଚେୟେ ଆଛି ତୋମାଦେର ସବା-ପାନେ ।
ସ୍ଥାନ ଦାଓ ମୋରେ ସକଲେର ମାଝଖାନେ ।
ନୀଚେ ସବ—ନୀଚେ ଏ ଧୂଲିର ଧରଣୀତେ
ଯେଥା ଆସନେର ମୂଲ୍ୟ ନା ହୟ ଦିତେ,
ଯେଥା ରେଖା ଦିୟେ ଭଗ କରା ନେଇ କିଛୁ,
ଯେଥା ଭେଦ ନାଇ ମାନେ ଆର ଅପମାନେ ।
ସ୍ଥାନ ଦାଓ ସେଥା ସକଲେର ମାଝଖାନେ ।

ଯେଥା ବାହିରେର ଆବରଣ ନାହି ରୟ,
ଯେଥା ଆପନାର ଉଲଙ୍ଗ ପରିଚୟ ।
ଆମାର ବଲିୟା କିଛୁ ନାଇ ଏକେବାରେ
ଏ ସତ୍ୟ ଯେଥା ନାହି ଢାକେ ଆପନାରେ,
ସେଥାୟ ଦାଁଡ଼ାୟେ ନିର୍ଲଜ ଦୈନ୍ୟ ମମ
ଭରିୟା ଲଇବ ତାଁହାର ପରମଦାନେ ।
ସ୍ଥାନ ଦାଓ ମୋରେ ସକଲେର ମାଝଖାନେ ।

୧୫ ଆଷାଢ଼ ୧୩୧୭

ମୁଁ ତୁମ୍ଭମାନଙ୍କ ଆଡ଼କୁ ଚାହିଁ ରହିଛି । ମୋତେ ସଭିଙ୍କ ମଝିରେ ସ୍ଥାନ-ଦିଅ । ସବାତଳେ ଧୂଳିମାଟିରେ ଯେଉଁଠି ବସିବାର ମୂଲ୍ୟ ନେବାକୁ ପଡ଼େନା, ଯେଉଁଠି ଭାଗାଭାଗି କିଛିନାହିଁ, ଯେଉଁଠି ମାନ-ଅପମାନର ଭେଦନାହିଁ, ମୋତେ ସେଇଠି ସଭିଙ୍କ ମଝିରେ ସ୍ଥାନଦିଅ ।

ଯେଉଁଠି ବାହାରର ଆଡ଼ମ୍ବର ନଥାଏ, ଯେଉଁଠି ପ୍ରକୃତ ପରିଚୟ ଦେବାରେ ସଂକୋଚ ନଥାଏ, ଯେଉଁଠି ନିଜରବୋଲି କିଛି ନଥାଏ, ସେଠି ଛିଡ଼ାହୋଇ ମୋର ଲଜ୍ଜାହୀନ ଦୈନ୍ୟ ତୁମର ଅତୁଳ ଦାନରେ ଦୂର ହୋଇଯିବ ।

ଆର　　ଆମାୟ ଆମି ନିଜେର ଶିରେ
　　　　ବଇବ ନା ।
ଆର　　ନିଜେର ଦ୍ୱାରେ କାଙ୍ଗାଲ ହୟେ
　　　　ରଇବ ନା ।
ଏଇ　　ବୋଝା ତୋମାର ପାୟେ ଫେଲେ
　　　　ବେରିୟେ ପଡ଼ବ ଅବହେଲେ-
କୋନୋ ଖବର ରଖବ ନା ଓର,
　　　　କୋନୋ କଥାଇ କଇବ ନା
ଆମାୟ ଆମି ନିଜେର ଶିରେ
　　　　ବଇବ ନା ।

ବାସନା ମୋର ଯାରେଇ ପରଶ
　　　　କରେ ସେ
ଆଲୋଟି ତାର ନିବିୟେ ଫେଲେ
　　　　ନିମେଷେ ।
ଓରେ　　ସେଇ ଅଶୁଚି ଦୁଇହାତେ ତାର
ଯା ଏନେଛେ ଚାଇ ନେ ସେ ଆର;
ତୋମାର ପ୍ରେମେ ବାଜବେ ନା ଯା
　　　　ସେ ଆର ଆମି ସଇବ ନା
ଆମାୟ ଆମି ନିଜେର ଶିରେ
　　　　ବଇବ ନା ।

୧୫ ଆଷାଢ଼ ୧୩୧୭

ଆଉ ମୁଁ ମୋ ନିଜ କାନ୍ଧରେ ନିଜକୁ ବୋହିବିନି । ଆଉ ନିଜ ଦ୍ୱାରରେ କାଙ୍ଗାଳ ହୋଇ ରହିବିନି । ନିଜର ବୋଝ ତୁମ ପାଦତଳେ ଫିଙ୍ଗି ଅବହେଳାରେ ବାହାରି ପଡ଼ିବି । ଆଉ ତାର ଖବର ରଖିବିନି ।

ମୋ ବାସନାର ପବନ ଯାହାକୁ ଛୁଏଁ, ତାର ଆଲୋକ କ୍ଷଣକରେ ଲିଭିଯାଏ । ଯାହା ଅପବିତ୍ର ଦୁଇହାତ ଭରି ଆଣିଥିଲି ତାହା ଆଉ ଗ୍ରହେଁନା ତୁମ ପ୍ରେମରେ ଯାହା ନବାଜେ—ତାହାକୁ ମୁଁ ସହିପାରିବି ନାହିଁ ।



## ୧୦୭

ହେ ମୋର ଚିତ୍ତ, ପୁଣ୍ୟ ତୀର୍ଥେ
　　ଜାଗୋ ରେ ଧୀରେ—
ଏଇ ଭାରତେର ମହାମାନବେର
　　ସାଗରତୀରେ ।

ହେଥାୟ ଦାଁଡ଼ାୟେ ଦୁ ବାହୁ ବାଡ଼ାୟେ
　　ନମି ନରଦେବତାରେ,
ଉଦାର ଛନ୍ଦେ ପରମାନନ୍ଦେ
　　ବନ୍ଦନ କରି ତାଁରେ ।
ଧ୍ୟାନଗମ୍ଭୀର ଏଇ-ଯେ ଭୂଧର,
ନଦୀଜପମାଲା ଧୃତ ପ୍ରାନ୍ତର,
ହେଥାୟ ନିତ୍ୟ ହେରୋ ପବିତ୍ର
　　ଧରିତ୍ରୀରେ
ଏଇ ଭାରତେର ମହାମାନବେର
　　ସାଗରତୀରେ ।

କେହି ନାହି ଜାନେ କାର ଆହ୍ୱାନେ
　　କତ ମାନୁଷେର ଧାରା
ଦୁର୍ବାର ସ୍ରୋତେ ଏଲ କୋଥା ହତେ
　　ସମୁଦ୍ରେ ହଲ ହାରା ।
ହେଥାୟ ଆର୍ଯ୍ୟ, ହେଥା ଅନାର୍ଯ୍ୟ,
　　ହେଥାୟ ଦ୍ରାବିଡ଼ ଚୀନ—

ଶକହୁନଦଲ ପାଠାନ ମୋଗଲ
ଏକ ଦେହେ ହଲ ଲୀନ
ପଶ୍ଚିମ ଆଜି ଖୁଲିୟାଛେ ଦ୍ବାର
ସେଥା ହତେ ସବେ ଆନେ ଉପହାର,
ଦିବେ ଆର ନିବେ, ମିଲବେ ମିଲିବେ,
ଯାବେ ନା ଫିରେ—
ଏଇ ଭାରତେର ମହାମାନବେର
ସାଗରତୀରେ ।

ରଣଧାରା ବହି ଜୟଗାନ ଗାହି
ଉନ୍ମାଦ କଲରବେ
ଭେଦି ମରୁପଥ ଗିରିପର୍ବତ
ଯାରା ଏସେଛିଲ ସବେ
ତାରା ମୋର ମାଝେ ସବାଇ ବିରାଜେ
କେହ ନହେ ନହେ ଦୂର,
ଆମାର ଶୋଣିତେ ରୟେଛେ ଧ୍ବନିତେ
ତାରି ବିଚିତ୍ର ସୁର ।
ହେ ରୁଦ୍ରବୀଣା, ବାଜୋ ବାଜୋ ବାଜୋ,
ଘୃଣା କରି ଦୂରେ ଆଛେ ଯାରା ଆଜଓ
ବନ୍ଧ ନାଶିବେ, ତାରାଓ ଆସିବେ,
ଦାଁଡ଼ାବେ ଘିରେ
ଏଇ ଭାରତେର ମହାମାନବେର
ସାଗରତୀରେ

ହେଥା ଏକଦିନ ବିରାମ ବିହୀନ
    ମହା ଓଙ୍କାର ଧ୍ୱନି
ହୃଦୟତନ୍ତ୍ରେ ଏକେର ମନ୍ତ୍ରେ
    ଉଠେଛିଲ ରନରନି ।
            ତପସ୍ୟାବଲେ ଏକେର ଅନଲେ
                ବହୁରେ ଆହୁତି ଦିୟା
            ବିଭେଦ ଭୁଲିଲ, ଜାଗାୟେ ତୁଲିଲ
                ଏକଟି ବିରାଟ ହିୟା ।
            ସେଇ ସାଧନାର ସେ ଆରାଧନାର
            ଯଜ୍ଞଶାଲାର ଖୋଲା ଆଜି ଦ୍ୱାର,
            ହେଥାୟ ସବାରେ ହବେ ମିଲିବାରେ
                ଆନତଶିରେ
            ଏଇ ଭାରତେର ମହାମାନବେର
                ସାଗରତୀରେ ।

ସେଇ ହୋମାନଲେ ହେରୋ ଆଜି ଜ୍ୱଲେ
    ଦୁଖେର ରକ୍ତ ଶିଖା ।
ହବେ ତା ସହିତେ, ମର୍ମେ ଦହିତେ—
    ଆଛେ ସେ ଭାଗ୍ୟେ ଲିଖା ।
            ଏ ଦୁଖବହନ କରୋ ମୋର ମନ,
                ଶୋନୋ ରେ ଏକେର ଡାକ ।
            ଯତ ଲାଜ ଭୟ କରୋ କରୋ ଜୟ
                ଅପମାନ ଦୂରେ ଯାକ ।

ଦୁଃସହ ବ୍ୟଥା ହୟେ ଅବସାନ
ଜନ୍ମ ଲଭିୟେ କୀ ବିଶାଲ ପ୍ରାଣ ।
ପୋହାୟ ରଜନୀ, ଜାଗିଛେ ଜନନୀ
ବିପୁଲ ନୀଡ଼େ
ଏଇ ଭରତେର ମହାମାନବେର
ସାଗରତୀରେ ।

ଏସୋ ହେ ଆର୍ଯ୍ୟ, ଏସୋ ଅନାର୍ଯ୍ୟ
ହିନ୍ଦୁ ମୁସଲମାନ
ଏସୋ ଏସୋ ଆଜ ତୁମି ଇଂରଜ,
ଏସୋ ଏସୋ ଖ୍ରୃଷ୍ଟାନ ।
ଏସୋ ବ୍ରାହ୍ମଣ୍, ଶୁଚି କରି ମନ
ଧରୋ ହାତ ସବାକାର ।
ଏସୋ ହେ ପତିତ, କରୋ ଅପନୀତ
ସବ ଅପମାନଭାର ।
ମାର ଅଭିଷେକେ ଏସୋ ଏସୋ ତ୍ୱରା
ମଙ୍ଗଲଘଟ ହୟ ନିଯେ ଭରା
ସବାର-ପରଶେ-ପବିତ୍ର-କରା
ତୀର୍ଥନୀରେ
ଆଜି ଭରତେର ମହାମାନବେର
ସାଗରତୀରେ ।

୧୮ ଆଷାଢ଼ ୧୩୧୭

ହେ ମୋର ଚିତ୍ତ, ଏ ପୁଣ୍ୟତୀର୍ଥରେ ଧୀରେ ଧୀରେ ଜାଗ୍ରତ ହୁଅ । ଏଇ ଭାରତର ମହାମାନବର ସାଗର ତୀରରେ ଜାଗିଉଠ । ଏଠି ଛିଡ଼ାହୋଇ ଯୋଡ଼ହସ୍ତ ମୁଁ ମାନବ ଦେବତାକୁ ନମସ୍କାରକରେ । ଜଗୀତରେ ପରମାନନ୍ଦରେ ତାର ବନ୍ଦନା କରେ । ଏଇ ଧ୍ୟାନମଗ୍ନ ପର୍ବତ ଶିଖର, ନଦୀ-ଜପମାଳା ଧାରଣ କରିଥିବା ବିସ୍ତୃତ କ୍ଷେତ୍ର, ଏଇ ନିତ୍ୟ ପବିତ୍ର ପୃଥିବୀ କୁ ଅବଲୋକନ କର ।

କିଏଜାଣେ, କାହା ଆହ୍ୱାନରେ କେତେ ମନୁଷ୍ୟର ଧାରା ଦୁର୍ବାର ସ୍ରୋତରେ କୁଆଡୁ ଆସି ଏଇ ସମୁଦ୍ରରେ ବିଲୀନ ହୋଇଗଲା । ଏଠି ଆର୍ଯ୍ୟ, ଅନାର୍ଯ୍ୟ, ଦ୍ରାବିଡ଼, ଚୀନ, ଶକ, ହୁଣ, ପଠାଣ, ମୋଗଲ ଏକ ଶରୀରରେ ବିଲୀନ ହୋଇଗଲେ । ଆଜି ପଶ୍ଚିମ ଦ୍ୱାର ଖୋଲିଛି, ଉପହାର ଦେଉଛି । ସେମାନେ ଦେବେ ଆଉ ନେବେ ମିଶିବେ ଓ ମିଶାଇବେ, ଫେରିଯିବେନାହିଁ ଏଇଭାରତର··· ।

ଯେଉଁମାନେ ରଣକ୍ଷେତ୍ରରେ ରକ୍ତ ବୁହାଇ, ଉନ୍ମତ୍ତ କୋଳାହଳ କରି ଜୟଗାନ ଗାଇ, ଦୁର୍ଗମ ମରୁ ପର୍ବତ ଡେଇଁ ଆସିଥିଲେ ସେ ସଭିଏଁ ଆମରି ଭିତରେ ଏକାକାର । ସେମାନଙ୍କର ବିବିଧ ସ୍ୱର ମୋ ରକ୍ତରେ ଧ୍ୱନିତ ହେଉଛି । ହେ ରୁଦ୍ରବୀଣା, ବାଜି ବାଜିଉଠ । ଏବେବି ଯେଉଁମାନେ ଘୃଣାକରି ଦୂରରେ ଅଛନ୍ତି— ସେମାନେବି ବନ୍ଧନ ଭାଙ୍ଗି ଆସି ଘେରି ଛିଡ଼ାହେବେ ଏଇ ଭାରତର···।

ଏକଦା ଏଠି ବିରାମହୀନ ମହା ଓଁକାର ଧ୍ୱନି ବାଜିଉଠିଥିଲା—ଏକତା ଅଗ୍ନି ଯଜ୍ଞରେ ଅନେକତାକୁ ଆହୁତି ଦେଇ, ବିଭେଦ ଭୁଲି, ଏକ ବିରାଟ ହୃଦୟ ଜାଗରିତ କରିଥିଲା । ସେଇ ସାଧନା, ଯଜ୍ଞଶାଳାର ଦ୍ୱାରଆଜି ଉନ୍ମୁକ୍ତ । ଏଠି ସମସ୍ତଙ୍କୁ ନତ ମସ୍ତକରେ ମିଳିବାକୁ ହେବ—ଏଇ ଭାରତର···।

ଦେଖ, ସେଇ ହୋମାନଳେ, ଦୁଃଖର ରକ୍ତଶିଖାଜଳେ । ସେଥିରେ ମର୍ମ ଦହନ ସହ୍ୟ କରିବାକୁ ହେବ—ଏହା ଭାଗ୍ୟଲିଖନ । ହେ ମନ, ଏ ଦୁଃଖବହନ କର, ଶୁଣ, ଏକତାର ଡାକ । ସମସ୍ତ ଲଜ୍ଜାଭୟ ଜୟକର । ଅପମାନ ଦୂରେଇ ଯାଉ । -

ଦୁଃସହ ବ୍ୟଥାର ହୁଏ ଅବସାନ । ବିଶାଳପ୍ରାଣ ଜନ୍ମନିଏ । ରଜନୀ ପାହେ, ଜନନୀ ଜାଗିଉଠେ, ଏଇ ଭାରତର···।

ଆସ ହେ ଆର୍ଯ୍ୟ, ଅନାର୍ଯ୍ୟ, ହିନ୍ଦୁ, ମୁସଲମାନ, ଇଂରେଜ, ଖ୍ରୀଷ୍ଟାନ - ଆସ ହେ ବ୍ରାହ୍ମଣ, ଶୁଚି ମନରେ ସଭିଙ୍କ ହାତଧର । ଆସ ହେ ପତିତ,ସମସ୍ତ ଅପମାନର ଭାର ଲାଘବ କର । ମା'ର ଅଭିଷେକ ପାଇଁ ଶୀଘ୍ର ଆସ । ସଭିଙ୍କ ସ୍ପର୍ଶରେ ପବିତ୍ରକୃତ ତୀର୍ଥନୀରେ ସେ ମଙ୍ଗଳଘଟ ଏବେବି ଅପୂର୍ଣ୍ଣ, ଆଜି ଭାରତର···। ●

